# ଅରଣ୍ୟର ଡାକ
(କବିତା ସଂକଳନ)

କବି : ଫଣୀଂଦ୍ର ଭୂଷଣ ନଂଦ

ପ୍ରକାଶିକା : ଶୈଳବାଳା ନନ୍ଦ
ବାରକୋଟ, ଦେବଗଡ
ସ୍ୱତ୍ୱ : ଶୈଳବାଳା ନନ୍ଦ
ପ୍ରଥମ ସଂସ୍କରଣ : ଗଣେଷ ଚତୁର୍ଥୀ , ୨୦୦୦
ମୁଦ୍ରଣ : ଅପୂର୍ବା ଅଫ୍‌ସେଟ, ଭୁବନେଶ୍ୱର
ପ୍ରଚ୍ଛଦ : ସୁଧୀର କୁମାର ଲେଙ୍କା
ମୂଲ୍ୟ : ସତୁରୀ ଟଂକା

# ARANYARA DAKA
A Collection of Poems by Fanidra Bhusan Nanda

Publisher Smt. Sailabala Nanda
Barkot, Deogarh
Copy Right Smt. Sailabala Nanda
First Edition Ganesh Chaturthi, 2000
Printed at Apurba Off-Set, BBSR, Ph- (0674)426242
Cover Design Sudhir K. Lenka
Price Rs.70 /-(Seventy Only)

Digitized by PPRACHIN, SOA

# ଉତ୍ସର୍ଗ

ସମୟର ଅନନ୍ତ ସ୍ରୋତକୁ ...
ମାଟିର ବାସ୍ନା
ଓ
ଆକାଶର ସ୍ୱପ୍ନକୁ ... ।

- ଫଣୀଂଦ୍ର ଭୂଷଣ ନଂଦ

Digitized by PPRACHIN, SOA

# କବିତାର କଥା...

ମୁଁ ଏକାକୀ ନିର୍ଜନ ରାତିରେ ଗଛର କାନ୍ଦଣା ଶୁଣେ । ସହର, ବଜାର, ଗାଁର ଲୋକମାନେ ଭିନ୍ନ ଭିନ୍ନ ଆକୃତିର ଗଛପରି ଦିଶନ୍ତି । ଗଛ ସହିତ କଥା ହେବାରେ ମୁଁ ଯେଉଁ ଆନନ୍ଦ ପାଏ ଅନ୍ୟ କୋଉଥିରେ ତା' ନଥାଏ । ଗଛକୁ ଆପଣେଇ ନେବାରେ ଅନ୍ତସ୍ଥ ଦୁଃଖ ଉଭେଇ ଯାଏ । ଭୀମ ଭୋଇ ଧାଲଟି ପାଏ କବି । ଗଛକୁ ସାଉଁଟୁ ସାଉଁଟୁ ନିଜେ ଗଛ ବନି ସାରିଥାଏ । ଗଛର ପ୍ରାରବ୍ଧ ହିଁ ନିଜର ଭବିତବ୍ୟ । ଯିଏ ଗଛକୁ ଭଲ ପାନ୍ତି ସେମାନେ ନିଜକୁ ଏହି କବିତା ମାଧ୍ୟମରେ ଖୋଜିବେ; ଖୋଜୁ ଖୋଜୁ ଠାବ କରିବେ ନିଜକୁ । ତେବେ ଯାଇ ଏ କବିତା ଗୁଡ଼ିକର ସାର୍ଥକତା ।

କବିତାଟିଏ ପଢି ଆତ୍ମହରା ହେବା ଅପେକ୍ଷା ଗଛଟିଏକୁ ସାଉଁଳି ନେବାରେ ହିଁ କବିର ଶାପ ମୁକ୍ତି । କଳା ସମୟ ଭିତରେ ପ୍ରାରବ୍ଧର ଡ଼ାକହିଁ ଗଛ । ସେହିଁ ଧର୍ମ ସେହିଁ କର୍ମ ସେହିଁ ପ୍ରତିଟି ମଣିଷର ଭାଗ୍ୟ । ଗଛ ହେବାହିଁ କବିର ମହତ୍ତମ ସୌଭାଗ୍ୟ । ଗଛ କୌଣସି ନା କୌଣସି ଆଳରେ ମୋ ଚେତନାକୁ ବାରଂବାର ସ୍ପନ୍ଦିତ କରେ । ଶୈଶବରୁ ମୁଁ ଗଛ ସହିତ ଏକାତ୍ମ ହୋଇଛି । ଗଛକୁ ଜାଣିଛି, ଚିହ୍ନିଛି, ଉପଭୋଗ କରିଛି । ସବୁଜ ବୁଦା ତଳେ ଏକାକୀ ବସି ଅନେକ କବିତାର ଧାଡି ପରଖିଛି । ମାଇଲ୍ ମାଇଲ୍ ବ୍ୟାପି ଜଙ୍ଗଲ କଟା ହେବାର ଦୃଶ୍ୟ ଦେଖିଛି, ସହିଛି । ମୋ ଜନ୍ମଭୂମି ଉଚ୍ଛେଦ ହେବା, ରେଙ୍ଗାଳୀ ବହୁମୁଖୀ ବନ୍ଧ ଯୋଜନାର କରାଳ ଗ୍ରାସରେ ଅନେକ ଭିଟାମାଟି, ଅନେକ ପରିପୂର୍ଣ୍ଣ ଜଙ୍ଗଲ ଭୂମି ରାତାରାତି ଉଜୁଡ଼ି ଯିବାର ଦୁର୍ଭାଗ୍ୟକୁ ମୁଁ ଭୋଗିଛି । ମୁଁ ଦେଖିଛି କେମିତି କଟିଗଲା ପ୍ରକାଣ୍ଡ ଶାଳର ଐତିହାସିକ ସାମ୍ରାଜ୍ୟ । କେମିତି ଉଜୁଡ଼ିଗଲେ ପକ୍ଷୀର ବସା । କେମିତି ସର୍ବହରା ବଣ୍ୟ ପଶୁ ଏ ଅଞ୍ଚଳ ଛାଡ଼ି ରାତାରାତି ଉଭାନ୍ ହୋଇଗଲା । ମୁଁ ଦେଖିଛି କେମିତି ନଭଶ୍ଚୁଂଭୀ ପର୍ବତ ଶୃଙ୍ଗ ନଇଁ ଆସେ । ନୀଳ ମେଘ ସହିତ ବଂଧୁତା କରିଥିବା ହାତ ତଳକୁ ଖସେ । ମାଟିରେ ମିଶେ ।

ଏମିତି ଅନେକ ବଂଧୁତା, ଅନେକ ଶତ୍ରୁତା, ଅନେକ ସୃଷ୍ଟି, ଅନେକ ବିପର୍ଯ୍ୟୟର କାହାଣୀରେ ଗଛ ଓ ମୁଁ ଏକାତ୍ମ ହୋଇଛୁ । ସେଥିପାଇଁ ବୋଧେ କବିତାର ଧାଡ଼ିଟିଏ ରଚିଲା ବେଳେ ଅବଚେତନରେ 'ଗଛ' ମାଡ଼ି ଆସେ । ମୋତେ ଅଭିଭୂତ କରେ ପ୍ରକାରାନ୍ତରେ ବାଧ୍ୟ କରେ ତାକୁ ଅନ୍ତର୍ଭୁକ୍ତ କରିବାକୁ ଚେତନାରେ, ଅକ୍ଷରରେ, ଶବ୍ଦରେ ।

Digitized by PPRACHIN, SOA

ଉଦ୍ଭିଦଙ୍କ ଚେତନା ଯେତେବେଳେ ଘାରେ ଅତିଷ୍ଠ କରେ ସେତିକିବେଳେ ସୃଷ୍ଟିହୁଏ କବିତାର ଆଳଟିଏ । ଜଙ୍ଗଲକୁ ଜଙ୍ଗମର ସୀମାନ୍ତରୁ ଚିହ୍ନଟ ନକରି ଏକାକାର କରିବାକୁ ଯେଉଁ ପ୍ରଚେଷ୍ଟା ତାହାହିଁ କାବ୍ୟ ରୂପ ନିଏ । ଏଣୁ ଏ ସଂକଳନସ୍ଥ ଅନେକ କବିତାରେ ପୁନରାବୃତ୍ତି ଦୋଷକୁ ମୁଁ ଚାହିଁ ମଧ ଏଡ଼ାଇ ପାରିନାହିଁ । ଅନେକ କବିତା ଗୋଟିଏ ବକ୍ତବ୍ୟକୁ ବିଭିନ୍ନ ଆଳରେ ବିଭିନ୍ନ ପୃଷ୍ଠଭୂମିରେ ବ୍ୟକ୍ତ କରିଛନ୍ତି । ଗୋଟିଏ କବିତାରେ ଯାହା କହି ହୋଇଥାନ୍ତା ତା ପାଇଁ ଏତେ ଥାର୍ଟ ପଟୁଆର କାହିଁକି ? ଏହାହିଁ ବୋଧେ ଏ ସଂକଳନର ସୃଷ୍ଟି ବୀଜ । ନଚେତ୍ ଗୋଟିଏ ଗଛକୁ ନେଇ ଏତେ ଧନ୍ଦି ହୁଅନ୍ତି କାହିଁକି । ମୋର ଏ ଅସହାୟତାକୁ ଦରଦି ପାଠକେ ହୃଦୟଙ୍ଗମ କରିବେ, ସହ୍ୟ କରିବେ ଏତିକି ହିଁ ନିବେଦନ ।

ଏ କାବ୍ୟ ପୁସ୍ତକ ଅନ୍ତରାଳରେ ମୋର ସମସ୍ତ କବି ପିତୃ-ପୁରୁଷଙ୍କୁ ସ୍ମରଣ କରୁଛି । ପ୍ରତିଟି କବିତାର ଭିତ୍ତିଭୂମିରେ ଥିବା ବିଭିନ୍ନ ମୁହୂର୍ତ୍ତ, ବିଭିନ୍ନ ପରିବେଶକୁ ସ୍ମରଣ କରୁଛି ।

-କବି

Digitized by PPRACHIN, SOA

# ମୁଖଶାଳା



Digitized by PPRACHIN, SOA



Digitized by PPRACHIN, SOA

# ବାର୍ତ୍ତା

ମାଟିର ବାର୍ତ୍ତା ପହଞ୍ଚାଇଛି
ଆକାଶକୁ
ତମକୁ ।

ବହୁବାର ବର୍ଷାରେ ଗାଧୋଇ
ଝରାପତ୍ରକୁ ସାଇତିଛି
ମାଟିରେ
ମରି ଯାଇନି ଅଙ୍କୁର
କାହାର ନା କାହାର
ପରଶରେ ଗଜୁରିଛି
କଅଁଳ ଛନଛନ
ଚାରାଟିଏ
ଲୁହ ବିନ୍ଦୁଟିଏ ପାଇ ।

ଏଥର ଦୁଃଖ ଫାଶି ଲଗାଇଲା
ପ୍ରେମରେ
ପ୍ରତ୍ୟୟରେ
ଗଛଡାଳରେ
ନିଶୂନ ଅଂଧାର ଭିତରେ
ଦୁଇ କୂଳ ଖାଇ ନଈ
ଜୀବନ ବାଂଧିଛି
ଲହରୀରେ ।

କିଏ ଅଂଧାର ଓ ନୀରବତାରେ
ହୁରୁଡ଼ାଇ ଦିଏ ଦୁଃଖ



Digitized by PPRACHIN, SOA

ନବ ଯଉବନୀର
ବଇଁଶି ସୁରରେ
ଝୁଙ୍କି ପଡ଼େ ଶୂନ୍ୟ ଆକାଶ ।

ତପସ୍ୟା ଛାଡ଼ି ସନ୍ୟାସୀ
ଶାବକ ଛାଡ଼ି ମା
ତୃଣ ଛାଡ଼ି ହରିଣୀ
ସ୍ତବ୍ଧ
ଝରଣାର ସୁଅ କଳ କଳ
ନୀରବ ।

ଇଏ କି ଶବ୍‌ଦ
ମରିବା ପରର ଜୀବନ
ଏତେ ଶାନ୍ତ
ଏତେ ଉଚ୍ଛନ୍ନ
ଆକାଶକୁ ବାର୍ତ୍ତା ଦିଆ ସରିଛି
ମାଟିର ।





Digitized by PPRACHIN, SOA

# ମହୀରୁହ

ରୁହ
ମାଟି ସ୍ତବ୍ଧ
ଅଜବ ସ୍ମୃତି ଧରି
ଆକାଶକୁ ଖେଦିଯାଏ
ଭ୍ରମରେ
ମେଲିଯାଏ ସବୁ ପାଖୁଡ଼ା

ଅବିଶ୍ୱାସରେ ଫାଟିପଡ଼େ
ଭୂମି ;
ମୁକୁଳି ଯାଏ ଇନ୍ଦ୍ରଜାଲ
ବ୍ୟକ୍ତ କରେ
ପ୍ରଚ୍ଛନ୍ନ ଦୁଃଖ
ନିବିଡ଼ ଏକାକୀତ୍ୱରେ

ମେଲି ମେଲି ଯାଏ
ପବନର ସୁଲୁସୁଲୁ ହାତ
ବର୍ଷା ଗପ ଜମାଏ
ପିଠିକରି ନଙ୍ଗର ଭିଡ଼ିଦିଏ
ବଉଦ ।

ବିରହରେ
ବର୍ଷାଋତୁ ତମକୁ ଖୋଜେ
ମୂଲିଆ ବିଲ ହୁଡ଼ାରେ
ପକ୍ଷୀ ହୁରୁଡ଼ାଏ

ମାଟି, ମନ ମାରିଦିଏ
ଭୂମି ଭ୍ରମରେ ପଡ଼େ
ଆ ଆ ଡ଼ାକେ
ଆକାଶ



Digitized by PPRACHIN, SOA

ମାଟିରେ ଜନ୍ମ
ମାଟିରେ ମୃତ୍ୟୁ

ବାଟ ଅବାଟ
ସବୁଠି ଭେଟ
ତମରି କପଟ

ପବନ ସାଥିରେ
ବର୍ଷା ସାଥିରେ
ଖେଳ ଜମେ

ପ୍ରେମ ବଦଳେ
ବଉଦ ରଙ୍ଗରେ
ପକ୍ଷୀଟିଏ ଚୁଞ୍ଚୁମାରେ
ସ୍ୱପ୍ନ ଦେଖେ

ଆକାଶରେ ସ୍ୱପ୍ନ
ଏକାକୀ ପଥିକ
ଲକ୍ଷ୍ୟ ସ୍ଥିର ।

ବାଟ ସରି ଆସୁଛି
ମହୀରେ ମୁଁ
ଅହରହ ବଦଳି ଯାଉଛି
ଦୃଶ୍ୟ

ତୁମେ ଅଧବାଟରେ
ମୁଁ ଭୂମିରେ ଭ୍ରମରେ ।
(ମହୀରେ ଜୀବନ)





Digitized by PPRACHIN, SOA

# ଆକାଶର ସ୍ୱପ୍ନ ଓ ଦୁଷ୍ଟ ପିଲାର ଚାହା

ଆକାଶର ସ୍ୱପ୍ନ ଓ ଦୁଷ୍ଟ ପିଲାର ଚାହାଣୀ
ପକ୍ଷୀର ପ୍ରେରଣା
ଉଡ଼ିବା ପାଇଁ ।

ଅରଣ୍ୟର ଦିଗ, ଅଜଗରର ନିଦ
ଖାଁ ଖାଁ ପାହାଡ଼ର କୋଳ
ଭୁଲେଇ ଦେଇପାରେ ଝରଣାକୁ ।

ଗଛ
ନୂଆ ଠିକଣାର ବାର୍ତ୍ତାବହ
ପଥହୀନ ପଥର ବାଟୋଇ ।

ପକ୍ଷୀ ଭୁଲ କରେ
ଉଡ଼େ
ଗହନ ଜଙ୍ଗଲକୁ ।

ଗଛ ଗୋଟିଏ ଭୁଲର
ପୁନରା ବୃତ୍ତି କରେ
ଶତ୍ରୁ ମିତ୍ର ନିର୍ବିଚାରରେ
କୁରାଢ଼ିକୁ ବେକ
ଦେଖାଏ ।

ମଙ୍ଗଳ ତିଥି, ବଂଧୁ ବାଂଧବ
ଆକାଶ ଓ ଚଢ଼େଇ
ଝର୍ଣ୍ଣା କୂଳର ସନ୍ୟାସୀ
କିଏ ରଖି ପାରେ ?



Digitized by PPRACHIN, SOA

ଗଛ କାଟିଗଲେ
କିଏ କାହାର ?

ଉପରର ଖରା ଶୋଷୁଥିବା ମାଟି
ପ୍ରଥମେ ବୁଝେ ଶୂନ୍ୟତା
ଆକାଶର କଟାକ୍ଷ, ଚଢ଼େଇ ଉଡ଼ାଣ
ଠଉର କରି ପାରେନା ଦିଗ ।

ଗଛ କଟି ଗଲେ
କିଏ କାହାର ?

ମୁଁ ହେଲେ କଟିଯାନ୍ତି
ଅଥଚ ଟାଣି ରଖିଛି ମାଟି
ଭିଡୁଛି ଆକାଶ ।





Digitized by PPRACHIN, SOA

# ଆକାଶ ପରି

ଗଛ, ବଢ଼ାଇ ଦେଲା ଫଳ
ନେ' ତୋର
ଛାଇ ବାଟୋଇର
ମୋର ।

ପାହାଡ଼ ହସୁଥାଏ
ତୋ ପଣତ ଦର୍କାର
ସୁନୀଳ ବିସ୍ତାର
ବର୍ଷା ଓହ୍ଲାଇଲେ
ଝୁମ୍ ଝୁମ୍ ଶୁଭେ
ତୋର ପାଦର ନୁପୂର ।'

ପୃଥ୍ୱୀ ସ୍ୱପ୍ନ ଦେଖେ
ଛୁଏଁ ତମ ଓଠ
ମୁଁ ଗୁଡ଼େଇ ହୁଏ
ନୀଳ ପଣତରେ
ପବନକୁ ଆଉଜି
ବର୍ଷାରେ ଭିଜିଲେ
ଲାଗେ ମାଟିରେ
ତାରା ଗଜୁରୁଚି ।

କେବେ ବେଳେ ଲାଗେ
ମୋ ଛାତିରେ ହଜିଛି
ପକ୍ଷୀର ଉଡ଼ାଣ
ଆକାଶର ତାରା
କେତେବେଳେ ଲାଗେ
ଫୁଲରେ ସାଜିଛି



Digitized by PPRACHIN, SOA

ପ୍ରେମିକାର ହସ
ସ୍ମୃତିର ଗଜରା ।

ଏଇମିତି ଗଛ ପରି
ଜୀବନ
ଫୁଲ ପରି ପ୍ରେମ
ମାଟିକୁ ଚୁମି
ସମୟ ଗଢ଼େ
ଆକାଶ ପରି
ମଣିଷ ।





Digitized by PPRACHIN, SOA

# ଅଭିଯୋଗ

ଗଛଟି କହିଲା
ମୁଁ ଆଦୌ ପସନ୍ଦ କରେନା
ମୋଟର ଗାଡ଼ି, ରେଳ ଓ
ଏ ସହରର  କଳ କାରଖାନାକୁ
ପେଟ୍ରୋଲ ଓ ଧୂଆଁ ଗନ୍ଧରେ
ମୋତେ ବାନ୍ତି ମାଡ଼େ
ଛିଃ ।

ଲଣ୍ଡା ପାହାଡ଼ କହିଲା
ଏମିତି ଅଭିଯୋଗ
ଶହେ ବର୍ଷ ତଳେ
ଶୁଣୁଥିଲି
ଏବେ କିଏ ଅଛି ଯେ,......!
ଅଥଚ ସହର  ବଢ଼ି
ଚାଲିଛି ।

ତୁ ବି ଚୁପ୍ ହେବୁ
ଦିନେ
ଅବା ତୋତେ
ହଟାଇ ଦିଆଯିବ ରାସ୍ତାରୁ ।





Digitized by PPRACHIN, SOA

# ବାଇଆ

ନଦୀ ସେପାରି ଗାଁ
ସୁନ୍ଦର
ଦୂର ପାହାଡ଼ ପରି
ପ୍ରେମିକାର ହସ ।

ଅନେଶ୍ୱତ ରାଣୀପରେ
ପ୍ରତୀକ୍ଷା
ସହଜ ସୁନ୍ଦରୀର
ଯୋଗୀର ।

ଅଂଧାର ମାଡ଼ି ଆସିଲେ
ପତ୍ନୀର ପଣତ ବିଛାଅ
ନଚେତ୍
ଲିଭିଯିବ ମାଟିର ରସାଳିଆ
ହସ ।

ତାମ୍ର କେଶୀ ନାରୀ ପାଇଁ
ଅଶ୍ୱପୁରୁଷର ଯୋଗାଡ଼
ଜୀବନ କହିଲେ
ବାଉଁଶ ଫୁଲର ହସ ।

ତାଳ ଛାଇରେ
ସ୍ୱପ୍ନ ଲଟକି ଥାଏ
ଛିନା ଛିନା ଜୀବନ
ବା'ରେ ହଲୁଥାଏ
ବସା
ବାଇଆ ନିର୍ବିକାର
ହସୁଥାଏ ।





Digitized by PPRACHIN, SOA

# ଆକାଶ ହେବା

ଚଢ଼େଇର ଆଖି ନେଇ ଆକାଶ
କଣ ଦେଖେ ?

ଆ' କହିଲେ ବଉଦ ଭାସି ଆସୁଚି
ଯା' କହିଲେ ଲୁହ ଭଳି
ଖସି ପଡୁଚି ପର ।

ଖାଇ ଗୋଡାଉଛି ବାଘଭଳି
ଶିକାରୀ ତୋଡ଼ରେ
ମାଟି ପାଣି ଗଛର ସଂଭୋଗ

ଏସ୍:ଟି:ଡ଼ି ପରି ମାଟିର ବାର୍ତ୍ତା
ସଂଚରି ଯାଉଚି ପଲକରେ
ଏକା ସାଂଗରେ ବଦଳି ଯାଉଚି
ରଂଗ, ହାଉଳି ଖାଉଛି ପବନ
ଫୁଲ ସବୁ ଝଡ଼ି ଯାଉଛି ନିମିଷକେ

ସବୁ ଗଛ ହାତ ଯୋଡ଼ ମୁଦ୍ରାରେ
ବର୍ଷା ଦେଖିଲେ ଆଡ଼େଇ ଯାଏ
ସବୁ ଚଢେଇ ଯୁଦ୍ଧ କାଳୀନ କଦମ୍ ତାଳରେ
ମାଟିର ଆକର୍ଷଣ ଆଡ଼େଇ ଯାଏ ।

ମୋର କୁମ୍ଭୀର ପରିନିଦ ବର୍ତ୍ତମାନ
ମୋତେ ଭୁଲରେ ଜଗାଇବ ନାହିଁ
ବାଘର ସଂଗମ ଦେଖିବା ପାଇଁ
ଡ଼ାକିବ ନାଇଁ



Digitized by PPRACHIN, SOA

ମୁଁ ବିଲେଇର  ପ୍ରସବ ଦେଖି
ଅସୁବିଧାରେ ପଡ଼ିଚି
ନା ଗଛ ହୋଇ ପାରୁଚି
ନା ମାଟି

ବରଂ ଧିରେ ଧିରେ
ଆକାଶ ହେବା
ଆରଂଭ କରିଛି ।





Digitized by PPRACHIN, SOA

# ସ୍ରଷ୍ଟା ହୋଇଥିଲେ

ସ୍ରଷ୍ଟା ହୋଇଥିଲେ ଗଢ଼ିଥାନ୍ତି
ସବୁଜ ଗଛଟିଏ
କିଛିପତ୍ର ମଝିରେ
ନୀଳ
ତଳେ ଶୂନ୍ୟତା ।

ଧୂସର ଫଟା ବିଲ
କଡ଼ରେ ପଟାସ ବଣ
ପ୍ରେମର ସମ୍ମୋହନ ।

ଗଢ଼ି ପାରିଲି
ଗଛଟିଏ
ଧାଡ଼ି ଧାଡ଼ି ଲୁହ ଦେଇ
ସ୍ୱପ୍ନର ମଖମଲି ଚାଦର ଢ଼ାଙ୍କି
ସବୁଜ ଛତାଟିଏ ଧରାଇ
ହାଡ଼ କଂକାଳର ମଣିଷକୁ
ପୋତିଦେଲି ।

ମାଟି ଓ ଆକାଶକୁ
ସଂଯୋଗ କରି
ସବୁଜ ରେଖାଟିଏ ଟାଣିଲି

ଗଛ ବୋଲି ଯା'ର ନାମ ଦେଲି
ସେ ମୁଁ ହିଁ ଥିଲି ।





Digitized by PPRACHIN, SOA

# ପାଦପ

ଜୀର୍ଣ୍ଣ ମାଟି
ଗୋଡ଼ି ବାଲି ଆବର୍ଜନା ଭିତରୁ
କେମିତି ସଂଭବିଲ ।
ପ୍ରାଣବନ୍ତ ଆକର୍ଷଣ
ଜୀବନର ଧାରା ।

ତା' ଭିତରେ ଏତିକି ପୁଲକ
ଏତିକି ରାଗିଣୀ
ସଞ୍ଚରି ଯାଉଥାଏ ମୋ ଶିରା ପ୍ରଶିରାରେ
ମୁଁ ମେଲି ଧରିଥାଏ
ନୀଳ ନୀଳ ଜୀବନର ଅଦ୍‌ଭୂତ ବିପଣୀ ।

ଭାବାତୀତ ଜୀବନର ଛନ୍ଦ
ମାଟିତଳୁ ସ୍ଫୁରେ
ତାକୁ ମୁଁ ରୂପଦିଏ ଭାବମୟ
ଜଗତରେ
ଅପୂର୍ବ ରାଗରେ ।

ସେହିଛନ୍ଦ
ସେ ଅମୂର୍ତ୍ତ ସ୍ୱର
ଜୀବ ରୂପେ ଖେଳିଯାଏ
ଅସଂଖ୍ୟ ପ୍ରାଣରେ ।

ପୁଲକିତ ହୁଏ ପବନର ଗର୍ଭ
ଆକାଶ ଚିକୁର
ମୋ ପ୍ରାଣସତ୍ତା ଜପୁଥାଏ
ଏକ ବୀଜ ମନ୍ତ୍ର
ସୃଷ୍ଟିର ମଙ୍ଗଳ ।





Digitized by PPRACHIN, SOA

# ଈଶ୍ୱର : ଆଲ୍ଲା

ବାଘର ଅରଣ୍ୟରେ
ନା-ଈଶ୍ୱର ନା-ଆଲ୍ଲା
ପକ୍ଷୀ ଆକାଶରେ ଉଡ଼େ
ସୀମା ନଥାଏ ।

ଜଙ୍ଗଲ ଭିତରେ ଦୁଇଟି
ଗୁଂଫା ।
ବାଘ ଆସେ
ପକ୍ଷୀ, ହରୀଣ କେବେ
ଏ ଗୁଂଫାରେ
କେବେ ସେ ଗୁଂଫାରେ ।

ଥରେ ଦଳେ ମଣିଷ ଆସିଲେ
ଯାଯାବର
କିଛି ରହିଲେ ଏ ଗୁଂଫାରେ
କିଛି ସେ ଗୁଂଫାରେ
ପରସ୍ପର ଭିତରେ
ସ୍ନେହ ସୌହାର୍ଦ୍ଧ୍ୟ ଥିଲା
ଯିବା ଆସିବା ଥିଲା ।

ପଲ ପଲ ହରିଣ
ପକ୍ଷୀ, ଠେକୁଆ
ଏପରିକି ବାଘ
ଆସୁଥିଲେ ।



Digitized by PPRACHIN, SOA

ମଣିଷ ହସୁଥିଲା
ପ୍ରେମର ହାତ ବଢ଼ାଉ ଥିଲା
ସମସ୍ତେ ଖୁସିରେ ଥିଲେ
କିଛି ଫରକ୍ ନଥିଲା ।

•

ଥରେ ଧର୍ମଯାଜକ ଆସିଲେ
ସୀମା ନିର୍ଦ୍ଦେଶ କଲେ
ପକ୍ଷୀକୁ ଦେଲେ ଆକାଶ
ବାଘକୁ ଗହନ ଜଙ୍ଗଲ
ମଣିଷକୁ ଗାଁ ।

ଗୁଂଫା ଦୁଇଟିର
ନାମ କରଣ କଲେ
ଈଶ୍ୱର ଓ ଆଲ୍ଲା

ବାସ, ଏଥର
ବାଘ ଡ଼ରିଲା
ମଣିଷକୁ
ମଣିଷ ବାଘକୁ ।

ହରିଣ କିଛି ଉଗ୍ରପନ୍ଥୀ ବନିଲେ
ମଣିଷ ମଣିଷ ଭିତରେ ପାଚେରୀ ଉଠିଲା

ଈଶ୍ୱର ଓ ଆଲ୍ଲା
ଅଲଗା ଚିହ୍ନଟ ହେଲେ
ଅଥଚ ଗୁଂଫା ସେମିତି ହିଁ ଥିଲା ।





Digitized by PPRACHIN, SOA

# ମୋ ଭିତର ଶୋଷ

ସୂର୍ଯ୍ୟର ମନା ମାନି
ଗଛ ପାଲଟିଛ ଯେ
ଫେରି ଆସିନ ପୂର୍ବ ରୂପକୁ ।

ପକ୍ଷୀ ଶୋଇଛି
ବିଧ୍ୱସ୍ତ ପରିବେଶର
ଶଙ୍କିତ ଗଳି ମୋଡ଼ରେ
ଚିରିଦିନ ।

ପବନ ଦୁଃଖ କରିଛି
ତମର ଦୁର୍ଗନ୍ଧମୟ
ନିଃଶ୍ୱାସକୁ
ମନା କରିନି ଯଦିଓ ।

ନଣ୍ଡା ପାହାଡ଼ର
ଶୋଷକୁ କେହି
ବୁଝିନି ତମ ଛଡ଼ା
ସମସ୍ତେ ଚୋରେଇ ନେଇଛନ୍ତି
ତା'ର ସ୍ୱପ୍ନକୁ ।

ଆଜି ମନେ ପଡ଼େ
କେତେ କଥା
ସ୍ମୃତିର ଦର୍ପଣେ....

ଟାଙ୍ଗରା ଚଟାଣର ବିଷକୁ
ଶୋଷି ନେବାକୁ ଓଠଟେ ନାହିଁ ।



Digitized by PPRACHIN, SOA

ନଣ୍ଡା ପାହାଡ଼ର ଶୋଷକୁ
ବୁଝିବାକୁ
ପାଣି ଟୋପାଏ ନାହିଁ ।

ପରିବେଶର ଶୂନ୍ୟତାକୁ
ସାଉଁଳି ଦେବାକୁ
ସ୍ନେହର ପରଶ ଟିଏ
ନାହିଁ ।

କେଉଁ ମନ୍ତ୍ରରେ ବଶତମେ
କେଉଁ ଆକର୍ଷଣରେ
ଚାଲି ଯାଇଛ ଯେ
ଆଉ ଫେରିନ ।

ଆସ
ପାହାଡ଼ର ଶୋଷ ଡାକୁଛି, ଆସ
ପବନର ଦୁଃଖ ଡାକୁଛି, ଆସ
ଗଛର ଶୂନ୍ୟତା ଡାକୁଛି, ଆସ
ଆସ ପରିବେଶର ସବୁଜିମାକୁ
ଫେରାଇ ଦେବାକୁ ଆସ
କାଠ ପାଲଟିବା ପୂର୍ବରୁ ଆସ
ଫେରାଇ ଦିଅ
ଘନ ସବୁଜିମାର ହସ ।

ଫେରାଇ ଦିଅ
ତୃଷିତ ଓଠର ଶୋଷ
ଆସ, କାଠ ପାଲଟିବା ପୂର୍ବରୁ
ଆସ ।





Digitized by PPRACHIN, SOA

# ତମ ଭିତରେ ମୁଁ

ସ୍ମୃତିର ଦିଗନ୍ତ ସେ ପାରେ
ସୂର୍ଯ୍ୟ ।
ମୁଁ ଲଙ୍ଘି ସାରିଥାଏ
ଗହନ ଜଙ୍ଗଲ ।

ନା ଡ଼ର ପ୍ରତିବେଶୀଙ୍କର
ନା ଡ଼ର ବାଘର
କେବଳ ବାଡ଼ି ପଟେ
ହିଂସ୍ର ଜନ୍ତୁର ଗର୍ଜନ
ଶାର୍ଦ୍ଦୁଳର ନଖଦାନ୍ତ ।

କୁହୁଡ଼ି ଭିତରେ
ମୁଁ ଏକ ପରାସ୍ତ ସୈନିକ
ପୃଥିବୀର କାଖରେ
ମୋର ସ୍ୱପ୍ନ
ଅସ୍ତମିତ ।

ଜଙ୍ଗଲର ନୀରବ ସଙ୍ଗୀତ ପରି
ମୋ ଜୀବନର ବାଣୀ
ତମ୍ ବେଣୀର ଗୋଲାପ
ଅତି ପ୍ରିୟ ମୋର
ଅତି ପ୍ରିୟ ନଦୀ ବଂଧ
ସ୍ରୋତର ଉଜାଣୀ ।

ପ୍ରତିଦଣ୍ଡ ପ୍ରତିଟି ମୁହୂର୍ତ୍ତ
ଅଭୁଲା ପାହାନ୍ତି
ପ୍ରିୟ ମୋର



Digitized by PPRACHIN, SOA

ପ୍ରତିଦିନ ପ୍ରତିରାତି
ଝଡ଼ପର ପୃଥିବୀର
ପବିତ୍ର ପ୍ରଶାନ୍ତି ।

ବାୟା ବସାରେ ମୁଁ
ତମ ଗଭୀର ତମ ହୃଦ ଦେଶରେ
ମୁଁ
ପାହାଡ଼ର ତୁଙ୍ଗରେ
ଅରଣ୍ୟର ନିଘଞ୍ଚତାରେ
ସମୁଦ୍ରର ଗଭୀରତାରେ
ଆକାଶର ନୀଳିମାରେ ମୁଁ

ମୁଁ ଶେଷତମ ସୂର୍ଯ୍ୟାସ୍ତ
ମୁଁ ଆଦିମତମ ଊଷା
ମୁଁ ଅନେକ ନଈର ଅନ୍ତହୀନ
ବୁଭୁକ୍ଷା ।

ସମୁଦ୍ର ଭିତରେ କୁହୁଳୁଥିବା
ଶୋଷର ଶେଷହୀନ
ପ୍ରତୀକ୍ଷା ।

❑



Digitized by PPRACHIN, SOA

# ବ୍ରାହ୍ମଣୀର ବ୍ୟଥା

ବ୍ରାହ୍ମଣୀ ସୁଅରେ
ଉଜେଇଁ ଦେଲା ପରେ
ତୋର ସ୍ୱପ୍ନ
ତୋର ଆଶା
ତୋର ଲୁହ
ଆଉ କଣ ଅଛି ଯେ ।

ମୁଁ ମାଗିବି ମାଗିବି ହୋଇ
ମାଗି ପାରିନି
ଗଛ ଦେବି ଦେବି କହି
ଦେଇ ପାରିନି
ନଈ ବହି ଯାଇଛି
ସମୟାନ୍ତରକୁ ।

କାଚ କେନ୍ଦୁ ପାଣିରେ
ନିଜ ପ୍ରତି ବିଂବ ଦେଖି
ଚମକିଛି ପ୍ରକୃତି
ପକ୍ଷୀ ଅଣ୍ଡରେ ମାଛ ପରି
ଜୀବନର ନିରୀହ ପ୍ରଶ୍ନ
ଚିରଦିନ ଲହୁ ଲୁହାଣ
କରିଛି ମୋତେ ।

ଆ, ସମୁଦ୍ର ହେବା
ଆ, ଜଙ୍ଗଲ ହେବା
ଆ, ପକ୍ଷୀର ଉଡ଼ାଣ ମାଗି
ସ୍ୱପ୍ନ ଦେଖିବା ।



Digitized by PPRACHIN, SOA

ବ୍ରାହ୍ମଣୀ ସୁଅ ମନା କରୁଛି
ମାଲ୍ୟଗିରିର ବୁକୁ କଂପୁଛି
ଅଶାନ୍ତ ବାତ ରୋଗୀ ପରି ;
ଶାଳ ଗଛର ଛାଇରେ
ସାନ୍ତାଳୀ ଯୁବତୀଟିଏ
ମୁଣ୍ଡର ଭାର ଓହ୍ଲାଇ ବସିଛି ।

ପକ୍ଷୀଟିଏ ଅଜଣା ଗଛର
ଡାଳରେ
ଗାଉଛି ଅସରା ରାଗିଣୀ
ସାଥୀ କାହିଁ
ପ୍ରୀତି କାହିଁ (?)

କା'ର ତୃଷିତ ଓଠକୁ ଚାଟି
ଝରି ଯାଉଛି ଦିଗ୍‌ବଧୂର ଲୁହ
ଗଢ଼ି ଉଠୁଛି ଏକ ନିରନ୍ତ
ନଦୀର ସୁଅ
ପ୍ରକୃତି ଖୋଜୁଛି
ନିଜ ଇତିହାସର ଖିଅ ।

ଦର୍ପଣ ପରି
ବ୍ରାହ୍ମଣୀ ସୁଅରେ
ଭସାଇ ଦେଇଥିବା
ଯଉବନର ବିଗତ ପ୍ରଣୟ ।





Digitized by PPRACHIN, SOA

# ଯାତ୍ରା

ସୁଅ ସେ ପଟେ
ଅସରନ୍ତି ପ୍ରଶ୍ନର ଢେଉ
ବାଲିଚର ଜୀବନର କ୍ରୁଦ୍ଧ
ଇଲାକାରେ
ଗୋଟିଏ ଓଟ ଗୋଟିଏ ଶାଗୁଣା
ଓ ଗୋଟିଏ ଶୁଷ୍କତରୁ ।

ଯାତ୍ରୀଟିଏ ଅସରନ୍ତି ଯାତ୍ରାରେ
ଶାଗୁଣାଟିଏ ଅକଳନ ପ୍ରତୀକ୍ଷାରେ
ଓଟଟିଏ ନିଜ ଭାର ସହ ସ୍ତବ୍ଧ
ଶୃଙ୍ଖଳା ଗଛଟିଏ ସବୁଜିମାର
ହାନ୍ଦୋଳାରେ କଡ଼ ଲେଉଟାଏ ।

ପବନରେ ସୁକୁସୁକୁ କାନ୍ଦଣା
ବାଲି ଶେଯରେ ଅସଂଯତ ଇଚ୍ଛାର
ଶୁଭ ବନ୍ଦାପନା
ଅନାଗତ ଯାତ୍ରାର ସଂଗୀତରେ
ବିଭୋର ପକ୍ଷୀ
ଅପହଞ୍ଚ ସ୍ୱପ୍ନର ରୋମାଞ୍ଚରେ
ମସ୍‌ଗୁଲ ଯାତ୍ରୀ ;

ସୁଅ ଭିତରୁ କିଏ
ପଚାରି ଦେଲା ନିରୀବ ପ୍ରଶ୍ନଟିଏ
ଏ ଯାତ୍ରାର ଶେଷ କୋଉଠି ?
ଏ ଯାତ୍ରାର ଉଦ୍ଦେଶ୍ୟ କଣ ??



Digitized by PPRACHIN, SOA

ଆଲୋଡ଼ିତ ହେଲା ଦିଗନ୍ତ
କଂପି ଉଠିଲା ଆକାଶ
ସମୁଦ୍ର ଢେଉର ସ୍ୱରରେ
ବାହୁନିଲା
ସ୍ମୃତିର ବିଳାପ ।

ସମୟର ଶୋଷ ନେଇ
ସଂଭବିଲା ଏକ ସ୍ୱପ୍ନ
ଯାହାକୁ ଧରିବାର ଲକ୍ଷ୍ୟରେ
ଅସରନ୍ତି ଯାତ୍ରାରେ ପଥିକ
ଅନାଗତ ସ୍ୱପ୍ନରେ ପକ୍ଷୀ
ଅସଂଯତ ଭାରରେ ଆନତ ଓଟ
ଗଛ-କୋରଡ଼ରେ କାଠହଣା
ପାହାଡ଼ ବୁକୁରେ ଝରଣା
ସ୍ତବ୍ଧ ହୋଇ ଗଲେ ;

ଶବ୍ଦର ଶବକୁ ଘେରି
ଅଜସ୍ର ଶାଗୁଣା
ଚକ୍କର କାଟୁଥିଲେ ।





Digitized by PPRACHIN, SOA

# ଗୀତ

ଜଙ୍ଗଲ ସେ ପଟେ କିଏ
ଗାଉଛି
ନଈ ପାଣିକୁ ଚହଲାଇ ଦେବାର
ଗୀତ ।
ପ୍ରେମିକା ମନକୁ ଆକର୍ଷିବାର
କୁହୁ ।
ଏତେ ଦରଦ ଏତେ ଆବେଗ
ବର୍ଷାରେ ତିନ୍ତିବା ପରି
ପରାଣକୁ ଘାରୁଛି
ସଜଳ କରି ଦେଉଛି ମନକୁ ।

ହୃଦୟର ସବୁଜ ମେଖଳାରୁ
ଖସି ପଡ଼ିଚି
ଲୋହିତ ରାଗିଣୀଟିଏ
ଶର ବିଦ୍ଧ ପକ୍ଷୀପରି
ଛଟପଟ ହେଉଚି
ଅନନ୍ୟ ବ୍ୟଥାରେ
ଏ କି ଗୀତ
ଏ କି ସୁର
ଭିଜାଇ ଦେଉଚି ମନ
କୋରି ଦେଉଚି ଅନ୍ତସ୍ଥଳ
ଜଙ୍ଗଲର ନିଆଁ ପରି
ହରଦମ ଜାଳି ଦେଉଛି
ସବୁ ସ୍ନେହ
ସବୁ ଦରଦ ।



Digitized by PPRACHIN, SOA

ଏ ଗୀତ ନୀରବତାର
ଗୁଞ୍ଜି ହୋଇଛି ପକ୍ଷୀର ପରରେ
ଜଙ୍ଗଲର ସବୁଜିମାରେ
ପାହାଡ଼ର ତୁଙ୍ଗିମାରେ

ନେସି ଦେଇଛି ଶୂନ୍ୟତାର କୋହ
ଗଛ କୋରଡ଼ରେ ପେଚା ପରି
ସମୟକୁ ଢୁଳୁଢୁଳୁ ଦେଖୁଛି
ପରଖୁଛି ଅଂଧାରର ସାନ୍ଦ୍ରତା
ମାପୁଛି ରାତିର ଗଭୀରତା ।

ଗୀତ ଶୁଣୁଶୁଣୁ ମନପକ୍ଷୀ
ଉଚ୍ଚାଟ ହୁଏ
ଦର୍ପଣରେ ଚଂଚୁ ମାରିବା ଛାଡ଼ି
ଅଣ ଲେଉଟା ପଥରେ
ଉଡ଼ିଯାଏ
ଉଡୁ ଉଡୁ ସମୟ
ପାଲଟି ଯାଏ ।





Digitized by PPRACHIN, SOA

# ମଧୁଚନ୍ଦ୍ରିକା

କିଏ ରଙ୍ଗ ଛାଟେ
ଆକାଶକୁ
ପକ୍ଷୀ ଲାଜେ ଲାଜ
ହୁଏ ।

ଅସ୍ତ ସୂର୍ଯ୍ୟର ଦିଗନ୍ତ
ମଳିନ ପଡ଼େ
ଜଙ୍ଗଲର ଗୀତ
ସ୍ତବ୍ଧ ହୁଏ ।

ହୃଦୟରେ ମୋର
ରକ୍ତଝରେ
ଝରା ଫୁଲର ସ୍ମୃତି ନେଇ
ଛଟପଟ ହୁଏ ଅତୀତ
ବର୍ତ୍ତମାନକୁ ସାଉଁଳି
ମୁଁ ଉଠେ
ଅତୀତକୁ ବୋକ
ଦେବାକୁ ଯାଇ
ରକ୍ତାକ୍ତ ହୁଏ
ଭଙ୍ଗା ଦର୍ପଣରେ ।

ପକ୍ଷୀ ଉଡ଼ିଗଲା ପରେ
କଣ ଛାଡ଼ିଯାଏ
ମୁଠାଏ ମାଟି
କିଛି ସ୍ମୃତିର ଆଂଚୁଡ଼ା ।



Digitized by PPRACHIN, SOA

ଗଛ ସେଇଠି ଆସ୍ଥାନ
ଜମାଏ
ମାଟିକୁ ପାଦରେ ଠେଲି
ଆକାଶକୁ ବୋକ ଦିଏ ।

ମୁଁ ଯେମିତି ଗଛଟିଏ
ସ୍ମୃତିରେ ଚେରେଇ ଯାଇଛି
ଓହ୍ଲେଇ ପାରୁନି ଅତୀତ
ଆକାଶକୁ ଅଣ୍ଡାଳିବାକୁ
ଚେଷ୍ଟା କରି
ଫେରି ଆସୁଛି ମୋର
ନି ପାରିଲା ହାତ ।

ତଳେ ଧୂଳି ଧୂସର
ସମୟର ଅହଂକାର
ଉପରେ ସୁନୀଳ ସ୍ୱପ୍ନର
ଚନ୍ଦ୍ରାତପ

ଏ ଭିତରେ ଗଛ ପକ୍ଷୀ
ସ୍ମୃତି ଓ ସମୟ
ମୋ ମଧୁ ଚନ୍ଦ୍ରିକାର
ଶେଷହୀନ ଅଭିଶାପ ।





Digitized by PPRACHIN, SOA

## କେବଳ ଅସୁର

ଧୂସର ପ୍ରଳୟ
ଯନ୍ତ୍ରସ୍ଥ ।

ସାବ୍‌ଜା ଅରଣ୍ୟର ଦିଗନ୍ତ ସତ୍ତ୍ୱେ
ସୃଷ୍ଟି
ଧ୍ୱଂସର ପଦାନତ ।

ଈଶ୍ୱର କାକୁସ୍ଥ
ନିଜ ଅଜାଣତରେ
ରାଜଚ୍ୟୁତ ।

ସର୍ବଗ୍ରାସୀ କ୍ଷୁଧାର
ଲେଲିହାନ୍‌ ଜୟ ଜୟକାର
ସହିତ
ନିଦ୍ରା ଉତ୍‌ଥିତ ସମସ୍ତ
ଅସୁର ।

ଚରି ଯାଉଛନ୍ତି ଧୂଳିମାଟି
ଗଛ ବୃଛ ପଶୁ ପକ୍ଷୀ
ଜୀବନ ସକଳ
ଅଲିଭା କ୍ଷୁଧାର ଆଁରେ
ମଣିଷ ବିକଳ ।

ସମୟ
ଅପମାନିତ
ପରାଜିତ
ଚାରିଆଡ଼େ ଅସୁର
ରାଜତ୍ୱ ।



Digitized by PPRACHIN, SOA

ମଣିଷ ମୁଣ୍ଡରେ
ଅଧିଷ୍ଠିତ ଈଶ୍ୱର
ଅବରୋହ ମୁଦ୍ରାରେ
ମଥାନତ ;

ଆସୁରୀ ସଭ୍ୟତା
ସିଂହ ବିକ୍ରମରେ
ଆରୋହ ଠାଣୀରେ
ଗର୍ବୋନ୍ନତ

ଭାଙ୍ଗି ପଡୁଚି ମଡ଼ମଡ଼
ସମୟର ମେଢ଼
ଯନ୍ତ୍ରବତ୍ ଈଶ୍ୱର
ଏବେ ଭୂମାରେ ଭୂମିରେ
ପ୍ରତି ନିଶ୍ୱାସରେ
କେବଳ ଅସୁର ।





Digitized by PPRACHIN, SOA

# ଇନ୍ଦ୍ରଧନୁ

କିଛି ଟଙ୍କା ପଠା ହୋଇଛି
ବାଘ ନାଁ ରେ ।
ମଣିଷ ଅକ୍ତିଆର କରିଛି ତାର ଭିଟାମାଟି ।

ଉଜୁଡି ଯାଇଚି ଜଙ୍ଗଲ
ମରି ପଡ଼ିଛି ଦି'ଟା ହେଟା
ହୁରୁଡ଼ି ଯାଇଛନ୍ତି ପଲେ ହରିଣ ।
ହଜି ଯାଇଚି ଶୈଶବ ।
ପ୍ରକୃତି ଖୋଲି ଦେଇଛି
ସୁନ୍ଦର ରୂପ
ସିଂଥିରୁ ସିଂଦୁର
ଏବଂ ଦି'ପଟ ଶଂଖା

ସଂଜ ସରିକି କଟା ସରିଥିଲା
ସବୁ ଗଛ ।
କିଏ ଜଣେ କଟା ଗଛ ତଳେ
ବଖାଣୁଥିଲା ଜଙ୍ଗଲର ଅବଦାନ ।

ଚଂପା ଫୁଲ
ଅଶୋକର ବାସ୍ନା
ଶାଳର ଲଂବା ହାତ
ବରର ଓହଳ
ଶାଗୁଆନର ସାମର୍ଥ୍ୟ
ଚାର ମହୁଲ ଫଳ
ଏ ସବୁକୁ ବାହୁନିବା ଥିଲା
ପର୍ଯ୍ୟାପ୍ତ ।



Digitized by PPRACHIN, SOA

ସବୁ ବଦଳି ଯାଇଥିଲା ।
ସୂର୍ଯ୍ୟାସ୍ତର ଚୁମା
ଦିଗନ୍ତର ଚାହାଣୀ
ବିଧବାର ଚୂଡ଼ି ;

ବାଘ କିଛି କ୍ଷତି ପୂରଣ
ପାଇଛି
କିଣିବ ବୋଲି ଇନ୍ଦ୍ରଧନୁ ।





Digitized by PPRACHIN, SOA

# ହୃଦୟ

ଗଛ ପାଗଳ ହୋଇ ଯାଇଛି ।

ମୋକ୍ଷ କାମନାରେ ଦଳେ ମଣିଷ
ଆଂକୁଳାଏ ଭିକ୍ଷାଧରି
କିଛି ସୁନ୍ଦରୀଙ୍କ କିସ୍ମତ୍
ଖୋଜି ଚାଲିଲେ ।

ସମୟ ହାତଛାଡ଼ି ଦେଇଛି
ପ୍ରେମର ସାମାନ୍ୟ ଲୁହର
ଆଶ୍ରାରେ ।

କୁରାଢ଼ି ଚୋଟରେ ଶେଷଭୁଲ
କବିତା ପାଲଟି ଯାଇପାରେ
କେତେ ବେଳେ ବି ।

କୁରାଢ଼ି ଉଠାଇଥିବା ହାତ
ଯୋଡ଼ ମୁଦ୍ରାରେ
ତପସ୍ୟା ତା'ର ଥିଲା ପ୍ରଖର
ନିଷ୍ପାପର ଏକ ସକାଳ ପାଇଁ

କ୍ଲାନ୍ତି ପୋଛି ଚାହିଁଥିବା ଆଖି
ଝାଳ ଭିଜା ଅପେକ୍ଷାରତ ଛାତି
କେହି ବଦଳାଇ ପାରିଲେନି ତା'ର
ଜାତକ ।

ପାଗଳ ଗଛ
ସବୁଲେଖି ଦେଇଛି ଦାନ ପତ୍ରରେ
ଭଙ୍ଗା ହୃଦୟ ଯୋଡ଼ା ଚାଲିଛି
ସନ୍ତର୍ପଣରେ ।





Digitized by PPRACHIN, SOA

# ମନ୍ଦିର

ସମସ୍ତେ ଦୁଃଖ ଝାଡ଼ି
ଠିଆ ହେଲେ ଯିବାକୁ
ପଡ଼ି ରହିଲା ଦଳଚକଟା ଫୁଲ
ଅପୂର୍ଣ୍ଣ ଆବେଗ ଏବଂ
ଆଖି ନଥିବା ଅଂଧାର ।

ଆଗରେ ଜହ୍ନରାତି
ମୁଁ ରତି ମାଗିଲା ବେଳକୁ
ସମୟ ସମୁଦ୍ର ପାଲଟିଛି ।

କିଏ ଏଠି ଠିଆ
ଇର୍ଷା ନା ବର୍ଷା
ଲୁହ ନାଁରେ ଅଭିଯୋଗ
ଭିଜି ଯାଇଛି ଘର ଅଗଣା
କିଏ ପୋଛି ଦେଇଛି ଗୁରୁବାରର
ଚିତା

ମୁଁ ଶେଷଥର ପାଇଁ ପଶିଥିଲି
ଗଂଭୀରାରେ
ସେ ଫେରାଇ ଦେଇଥିଲା ନିଃଶ୍ୱାସ

ରତିରେ ବ୍ୟସ୍ତଥିଲା ପ୍ରକୃତି
ଦୁଃଖ ଉଚ୍ଛୁଡ଼ା ହୃଦୟ ଭିତରେ
ବିଶ୍ୱାସ ଜମୁଥିଲା ;

ଜାଣେ
କାଲିକି ନଥିବ
ଜହ୍ନରାତି





Digitized by PPRACHIN, SOA

# ଦ୍ୱୀପ

ଅଂଧାର ଫିଟି ପଡ଼ିଛି
ଏ ଦ୍ୱୀପରେ ।

ତମ ମୁକୁଳା କେଶ
ସାଉଁଟି ଦିଏ ପବନ
କେତେ ବାଗରେ
ଫୁଲଟିଏ ଫୁଟିଲେ
ଦଶଦିଗ ରୁଂଧି ଯାଏ ଲୋଭ
କିଶୋରୀଟିଏ ହସିଲେ
ଭେଳା ଭେଳା ମର୍ଦ୍ଦ
ଭଙ୍ଗା ମାସ୍ତୁଲ ଏବଂ ଦଦରା ନାଆରେ
ଖେଦି ଯାଆନ୍ତି
ସମୁଦ୍ର ।

ହସ ହେଉ ବା ବାସ୍ନା
ସମାଧିଟିଏ ଗଢ଼ା
ନୀଳ ନିର୍ଜ୍ଜନତାରେ
ଫୁଲ ହେଉ ବା କିଶୋରୀ
ଏକା ଏକା ଗାଇବାକୁ ହୁଏ
ପ୍ରତୀକ୍ଷାର ଗୀତି
ଶୂନ୍ୟ ମୁହୂର୍ତ୍ତରେ

ଅଂଧାର ପରସ୍ତ ପରସ୍ତ
ଜମିଛି
ଦ୍ୱିପ ସାରା ଭଅଁର
ଓ ପ୍ରେମିକା
ନା' ଫୁଲଟିଏ ଫୁଟିଛି
ନା' କିଶୋରୀ ହସୁଛି ?



Digitized by PPRACHIN, SOA

ସର୍ଜନାର ମନ୍ତ୍ର ଭୁଲିଛି
ମାଟି
ମଞ୍ଜି ଗଜା ହେଉନି
ଦ୍ୱୀପ ଖୋଜୁଛି ନିଜ ମୂଳ
ଠିକଣା
ପ୍ରେମର ପଦ୍ମନାଡ଼ରେ
କୀଟ
ସୃଷ୍ଟିର ଜରାୟୁରେ
ଅଂଧାରର ନିବିଡ଼ ଓଢଣା

ନା ଫୁଲ
ନା କିଶୋରୀ
ସଭିଙ୍କ ଠିକଣା
ଗ୍ରାସିଯାଏ ପ୍ରେମର
ଉତ୍ଫଣ ଲହରୀ ।

ମହା ପ୍ଲାବନର ମନ୍ତ୍ର ପଢ଼ି
ଦ୍ୱୀପଟିଏ
ଖୋଜୁଥାଏ ସବୁ ଯୋଗସୂତ୍ର
ବାତ୍ୟା ନିପିଡ଼ିତ ଉର୍ମିତଳେ
ହୁଲି ଡ଼ଙ୍ଗାଟିଏ ।

ବହୁ ଉଚ୍ଚରେ ପକ୍ଷୀ
ତଳେ ଆଧାର
ଅନ୍ତର୍ହିତ
ଏ ଦ୍ୱୀପରେ ନିର୍ବାସିତ
ମୁଁ
ନିଜେଇ ଗୋଟିଏ
ଦ୍ୱୀପ ।





Digitized by PPRACHIN, SOA

# ଅନ୍ୟ କା'ର କାଂଧରେ ବଂଧୁକ

ଅନ୍ୟ କା'ର କାଂଧରେ ବଂଧୁକ
ଟ୍ରିଗାର ଟିପି ଜାଣେନା ବୋଲିତ
ଦୁଃଖ ।

ଗୋଟିଏ ମୁହଁରେ ହସ କାନ୍ଦକୁ ଲିପି
କଥା କହି ପାରେନା ବୋଲିତ
ଅପାରଗ

ଈଶ୍ୱର ପ୍ରଦତ୍ତ ଦୃଷ୍ଟି ନେଇ
ଜ୍ଞାନୀ ପାଲଟିନି
ଫିଙ୍ଗା ଫୋପଡ଼ା ଶବ୍ଦ ସଜେଇ
କବି ପାଲଟିନି
କାହାର ବ୍ୟଥା ଚୋରେଇ
ଦରଦୀ ପାଲଟିନି ;

ସେ ସାଉଁଟିଛି ସମସ୍ତଙ୍କ ଲୁହ
ଭାବର ସମୁଦ୍ର
ସେ ପୋଛିଛି ସମସ୍ତଙ୍କ ଦୁଃଖ
ଶାନ୍ତ ଆକାଶ ।

ପୃଥିବୀର ଦେଣନେଣ ଉର୍ଦ୍ଧ୍ୱରେ
ଦଣ୍ଡାୟମାନ
ତା' ପଦତଳେ ନତ ମସ୍ତକ
ଯେତେ ଯୋଗୀ
ଯେତେ ସଂବିଧାନ ।





Digitized by PPRACHIN, SOA

# ନିଜ ଭିତରେ

ବାରଂବାର କଟିଛି ଗଛ
ମାଟି ଝୁରିଛି ସାରା ଜୀବନ ।

ବୁକୁରେ ବଢ଼ିଛି କ୍ଷତ ଚିହ୍ନ
ଧୋଇ ହୋଇଛି ସାଗୁଆ
ବେହରଣ
ଭୁଲି ଯାଇଛନ୍ତି ପଶୁ ପକ୍ଷୀ
ପଲେ ମଣିଷ ଚାଷରେ
ବ୍ୟସ୍ତ ।

ଘର କୋଠା ଗଢ଼ିବାରେ
ଆୟୁଷ ନିଅଣ୍ଟ
କେବଳ ଭୁଲି ହୋଇଗଲା
ଗଛର ଅସ୍ତିତ୍ୱ ।

କଣ ବା' ଦେଇଛି ଗଛ
କିଛି ନିର୍ମଳ ପବନ
ଉଲାସିଆ ସଞ୍ଜବେଳ
ଜଙ୍ଗଲର ଭୟ, ହିଂସ୍ର ଜନ୍ତୁଙ୍କ
ଗର୍ଜନ
କୋଇଲିର ଗୀତ ।

ଗଛର ସ୍ମୃତି ଲିଭି ଗଲାଣି
ମନରୁ
ନୂଆ ଫୁଲଗଛ ବଢ଼ିଲାଣି.



Digitized by PPRACHIN, SOA

କୁଣ୍ଡରେ
ଯେତେ ଯତ୍ନ କଲେବି
ମାଡ଼ି ଆସୁଛି ଅମରିଲଟା, ପୁଟୁସବଣ
ବାରଂବାର ତାଗିଦା, ସଫାକର
ଜଙ୍ଗଲ, ବଢ଼ାଅ ଫୁଲଗଛ ।

ମନ ଭିତରେ ଅରମା ବଢୁଛି
ପୋତି ହୋଇଛି ମୁଣ୍ଡ କେଳାର
ହଲୁଛି ପାଦ ଆକାଶ ଆଡ଼କୁ
ଫୁଲଗଛ କୁଣ୍ଡରେ ଲଗା ଚାଲିଛି
ଅଥଚ ମଣିଷ ଖୋଜୁଛି
ଗଛ ଅରମା ଭିତରେ
ନିଜକୁ ନିଜ ଭିତରେ ।





Digitized by PPRACHIN, SOA

# ୟୁକାଲିପଟାସର ଦୁଃଖ

ଆକାଶ ମୋର ଲକ୍ଷ୍ୟ
ନ ଛାଡ଼ି ପାରେ ମାଟି
ନା ପବନ
ଦୁହିଙ୍କର ଆକର୍ଷଣ ଦୁର୍ନିବାର
ଦୋ' ମୁହାଣୀରେ ଘର
ଜୀବନ ସାରା ଦଉଡୁଛି ବୋଲି
ସମସ୍ତଙ୍କ ଅହନ୍ତା
ବାଦ ସାଧୁଛି ସମୟ ।

ଶୋଷ ମେଣ୍ଟେଇବାକୁ ଚୁମିଛି
ମାଟିର ରସ
ଜଙ୍ଗଲ ଉଜୁଡ଼ି ଗଲାବେଳେ
ମୁଁ ଦେଖାଇଛି ସାବ୍‌ଜା ଦିଗ୍‌ବଧୂର
ରାସ ।

ଟାଙ୍ଗର ପାହାଡ଼ର ଧୂଳି
ଶୂନ୍ୟ ଆକାଶର ମୋହ
ନିଶୂନ ଅରଣ୍ୟର କୋଳକୁ
ମୁଁ ପରିପୂର୍ଣ୍ଣ କରିଛି

ମୋତେ ମନେରଖ ନରଖ
ଈର୍ଷା କର ନକର
ମୁଁ ମାଟିରୁ ଉହୁଙ୍କି ଧରୁଥିବି ଆକାଶ
ଭୋକିଲା ମଣିଷର ଓଠରେ
ଟାଣି ଦେବି ସବୁ ଗାରେ ହସ ।



Digitized by PPRACHIN, SOA

ମୋର ଘର ବୋଲି କିଛି ନାହିଁ
ପରଘରୀ ବୋଲି ମୋତେ ଆଡ଼େଇ ଦେଲେ ବି
ମୁଁ ବସୁଧାକୁ ଆବୋରିଛି
ତମ ସଭିଙ୍କ ଦୀର୍ଘ ଶ୍ୱାସକୁ ଚିହ୍ନିଛି
ମଣିଷର ବ୍ୟଥାରେ ମୋର ସ୍ୱପ୍ନକୁ
ଗୋଳିଛି;

ମୂଳ ଲାଗୁଥିବା ଖଟିଖିଆକୁ ନିଜର
ବୋଲିଧରି ନେଇଛି
ସମୟର ଅହଂକାରକୁ ଡ଼ରି
ଉଜୁଡ଼ି ଯାଉଥିବା ଜଙ୍ଗଲର ଶ୍ମଶାନରେ
ମୁଁ ଅଙ୍କୁରିଛି

ଅଷ୍ଟ୍ରେଲିୟାରୁ ଭାରତ ଯାଏ ମୁଁ ପରିବ୍ୟାପ୍ତ
ନା ଅଛି ମୋର ଆରମ୍ଭ ନା ଅଛି ଅନ୍ତ ।

ରାଜନୀତିର ପଶାଖେଳରେ ମୋତେ
ନିମିତ୍ତ କରନା
ମୁଁ ତମ ପତ୍ରରେ ଭାଗ ବସାଉନି
ଶୋଷୁନି ମାଟିର ରକ୍ତ
ପୃଥିବୀର ପବନ
ଯାହା ନେଉଛି ଫେରାଇ ଦେଉଛି
ମୂଳଧନ ସହ ବରଂ ଅଧିକ

ସାରା ପୃଥିବୀକୁ ସାବୁଜାରେ ଭରିଦେବା
ମୋର ଅଙ୍ଗୀକାର



Digitized by PPRACHIN, SOA

ମୁଁ କାହାର ଶତ୍ରୁ ନୁହେଁ
କୋଟି କୋଟି ପ୍ରାଣର ସୋଦର ।

ତୁମର ମୁଠାଏ ମାଟି
ଚେନାଏ ଆକାଶ ଆବୋରିଛି ବୋଲି
ହତାଦର କରନା
ବନ୍ଦ କରିଦିଅନା ମୋ ସୃଷ୍ଟିର ସଙ୍ଗୀତ
ଉଦ୍‌ବାସ୍ତୁ ବେଘରୀ ଜୀବଟିଏ ମୁଁ
ଆଜୀବନ ଘୋଷୁଥିବି ପୃଥିବୀର ହୀତ ।





Digitized by PPRACHIN, SOA

# ଏକାକୀ ପକ୍ଷୀ

ଉଜ୍ଜ୍ୱଳ ଦିଶୁଚି କିଏ ?
ଓଠରେ ଗୋଲାପ ଫୁଟିଛି
ବସନ୍ତ ଉଂକି ମାରୁଛି
ସାରା ଜଗତ ଉଲ୍ଲାସମୟ
ପଂଗୁ ଗିରି ଲଂଘିବାକୁ ତିଆର୍
ପ୍ରେମିକ୍ ଅବହାଓ୍ୱା
କିଛି ରହିଗଲା ବୋଧେ ?

ରାତିର ଗଜରା
ଲୋଚା କୋଚା ସ୍ମୃତି
ଉଷୁମ ପରଶ
ଏବଂ ନରମ ନିଶ୍ୱାସର କଥା ବାର୍ତ୍ତା

ନା' କରି ଦେଲା କି ;
ନଦୀର ରାଗିଣୀକୁ
ନିମ୍ନଗାମୀ ସୁଅକୁ
ନାରୀର ଆଲିଙ୍ଗନକୁ
ପ୍ରେମର ଦୁର୍ବାରତାକୁ ?

ଖୋଜା ଚାଲିଛି କଣ ?

ଅହଂ କାରୀ ସମୟର ନିରୀହ ଆବେଗ
ଦୁର୍ଦ୍ଧର୍ଷ ସମ୍ରାଟଙ୍କ ଦୁର୍ବଳ ମୁହୂର୍ତ୍ତ
ତପସ୍ୱୀ ପାହାଡ଼ର ଶୀତଳ ଗର୍ଭ ।

ବର୍ଷା ବିନ୍ଦୁର ଗୀତରେ
ଥରି ଯାଉଛି ମାତୃହୃଦୟ



Digitized by PPRACHIN, SOA

ଶବ୍ଦମୟ ହାଲ୍ଲୋଳରେ
ଖେଦି  ଯାଉଛି ଦଶଦିଗ ।

ନାରୀକୁ ମନା
ନଦୀକୁ ମନା
ନିଷ୍ଠୁର ପୌରୁଷତ୍ୱର ଜୟ ଜୟକାର

ମୃତ୍ୟୁ ନିର୍ବାସିତ
ଜନ୍ମ ନେବାର ପୂର୍ବ ମୁହୂର୍ତ୍ତରୁ
ପ୍ରେମ ରାଜ୍ୟାନ୍ତରିତ
ଯୌବନ ପ୍ରାପ୍ତିର ବହୁପୂର୍ବରୁ ।

ଧୀରେ ଆସୁଛି ଜଣେ ?
ନିରାଶୟ ବାଟୋଇର ମୁଣ୍ଡ ତାତିରେ
ନୂଆଣିଆ ଆକାଶର ଥମ ଥମ ଭାବରେ
ପରିତ୍ୟକ୍ତା ନାରୀର ପଣତ କାନିରେ
ଟାଙ୍ଗର ଗଛର ଲୁହରେ

ସଂଜ୍ଞାହୀନ ପ୍ରାଣରେ
ନାରୀର ମୁଲାୟମ ପରଶ
ନଦୀର କୁଳୁକୁଳୁ  ଗୀତ
ନିର୍ବାସିତ ମୃତ୍ୟୁର କଅଁଳ ପଦପାତ
ପୌରୁଷର ଅହଂକାର ଭିତରେ
ଶେଷ କବିତାର ଧାଡ଼ି ଯନ୍ତ୍ରସ୍ଥ ।

ଖୋଜା ଚାଲିଛି କଣ ?
ବୋଧେ ଥୁଣ୍ଟା ଗଛରେ  ଅଣ୍ଟ ମାରୁଥିବା
ଏକାକୀ ପକ୍ଷୀଟିର ଚିତ୍ର ।




Digitized by PPRACHIN, SOA

# କେବେ

ପବନ ବୋଲି ହାଁ
କଲା ବେଳକୁ ସେ
ପଶି ଆସିଥିଲେ ନିବୁଜ କବାଟ ଦେଇ
ବର୍ଷା ଛାଡ଼ି ଗଲାଣି ।

ପଚାଶ ଜଣ ପଥିକ କ୍ରମାନ୍ୱୟରେ
ବୋଲ୍ ବଂ
ଚିତ୍ରିତ ଭାରର ଜଳ
ସଂସାରର ଶୋଷ
ବୈତରଣୀରୁ ବୈପାରୀଗୁଡ଼ା
ଗଛ ସବୁ କଟା ସଲାଣି
ଟ୍ରକ ବାଲା ସବୁ ରାଜପଥରେ
ଛିନ୍ନ ଛତ୍ର କିଏ କେଉଁ ଆଡ଼େ
ସମଲିଙ୍ଗୀ ଧର୍ଷଣ ପରେ
ପଡିଛି ଅସହାୟ ବାଳକର ଶବ
ରାସ୍ତା କଡ଼ରେ ।

ସୂର୍ଯ୍ୟ ଫଜେରା ଫଟେଇଲାଣି ।
ସମୟ ବୋଲି ଯାହାର
ସ୍ୱାଗତରେ ତୋରଣ, ମଞ୍ଚ
ଆଲୋକ ଓ ଡାକବାଜିର
ଆଡ଼ଂବର
ମଞ୍ଚାସୀନ ହାହାକାର ମୟ
ଅସମୟ ।
ବର୍ଷାସ୍ନାତ ଗଛ ଓ
ସୂର୍ଯ୍ୟସ୍ନାତ ସମୟ ପ୍ରଶ୍ନ କଲେ
ପୃଥିବୀ କଡ଼ ଲେଉଟିବ
କେବେ ?





Digitized by PPRACHIN, SOA

# ଗଛ ନିରୁଦ୍ଦିଷ୍ଟ

ଗଛ ହଠାତ୍ ଭୁଲିଗଲା
ଚେରକୁ ।
ଅଗ ଭେଦିକଲା
ଆକାଶ
ପକ୍ଷୀ
ପିଠିରେ ଭରାଦେଇ
ଗଛ
ଖୁବ୍ ଉପରକୁ ଉଠିଲା
ପକ୍ଷୀ
ନୟାନ୍ତ ହୋଇ
ଖୋଜୁଥିଲା
ଟିକିଏ ଗଛ ଛାଇ ।

ସାରା ସହରରୁ
ଗଛ
ନିରୁଦ୍ଦିଷ୍ଟ ।





Digitized by PPRACHIN, SOA

# ମଣିଷ ଏକ ଗଛ

ମଣିଷ ଏକ
ଗଛ
ମୁଣ୍ଡରେ
ଆକାଶ ବୋହି
ଚାଲେ ।

ସୁଖ ପତ୍ର ଝରାଦିଏ
କଅଁଳେ ଜଂଜାଳ
ଓ ଲମ୍ବୁ ଥାଏ
ଆଶା ।

ସମୟର କୁରାଢ଼ିରେ
ହରଦମ
ଛିଣ୍ଡୁଥାଏ ବେକ
ଗଜୁରି ଉଠେ ନୂଆ ସ୍ୱପ୍ନ ।





Digitized by PPRACHIN, SOA

# ଗାଁ

ସଂଜ
ଗାଁକୁ ଚୁମିଲା
ଗୋଧୂଳି
ଲାଖିଗଲା
ପଧାନ ଝିଅ ଗଭାରେ

ତାଳଗଛ
ଛାଇରେ ନିଶାପ
ହେବାର ଥିଲା

ଅନନ୍ତା
ଚୋରେଇ ନେଇଛି
ପଧାନ ଝିଅର
ଯୌବନ ।

ପଣ୍ଡିତେ କହିଲେ
ମୁଁ
ଦ୍ୱିତୀୟ ବିବାହ ପାଇଁ
ପ୍ରସ୍ତୁତ ।

❑



Digitized by PPRACHIN, SOA

# ନିଜକୁ ଗଛ ମନେ କରି

ଶୁଣ, ମୁଁ ଚାଲି ଯାଉଚି
ଖୋଜିବନି
କଫିନ୍ ତିଆରି ସରିନି ଏ ଯାଏଁ ।

ଦେଖ
କୋଉଠି କଣ ଭାଙ୍ଗୁଚି
ପବନର କରତ ଚାଲିଚି
ଗଛ କାଟିବାକୁ

ଆକାଶ ଓ ପୃଥୀର ମଂତ୍ରଣା
ଚାଲିଚି ଜ୍ୟୋସ୍ନା ଧାରରେ
ଅନବରତ ।

ଅଂଧାର
ମାଡ଼ି ଆସିଲେ ଜନ୍ତୁ ଉଠନ୍ତି
ମଣିଷ ଗହଳିରେ
ନିଜର ପରିଚୟ
ଖୋଜନ୍ତି ।

ଗଛ ମୁଣ୍ଡେଇ ଥାଏ
ଶୂନ୍ୟତା'କୁ ଚିରଦିନ
ଜହ୍ନ ରାତିରେ
ଆକାଶ ବେଳେ ବେଳେ
ଧୀରେ ଛୁଇଁ ଦିଏ
ମେଘର ହାତରେ ।



Digitized by PPRACHIN, SOA

ବେଳେ ବେଳେ
ଯାଦୁକର ପରି ସମୟ
ଝୁଲା ଭିତରୁ ବାହାର କରେ
ହରେକ୍ ରଂଗର ଖେଳଣା
ସେ ଭିତରେ ଥାଏ
ଗଛ କଟାଳୀର ଦୃଶ୍ୟ
ଆଉ ସୁନା ଟାଙ୍ଗିଆ କଥା ।

ଦିନେ ନାରୀଟିଏ ଉଲଗ୍ନ ହୋଇ
ଗଛକୁ ଗ୍ରାସ କଲା
ଜରାୟୁର ରଂଗରେ
ସେ ଦିନୁ ଗଛ
ଅନିର୍ଦ୍ଦିଷ୍ଟ ଅଜ୍ଞାତ ବାଧରେ ।

ଏବେ
ନାରୀଟିଏ ଆସେ
ଆକାଶରେ ଜହ୍ନର ସାମ୍ରାଜ୍ୟ ବସିଲେ
ନିଜ ଗର୍ଭକୁ ସାଉଁଳେ
ରାତି ନିବିଡ଼ ହେଲେ
ଗଛର ଗୁଣ ସୁମରି ବାହୁନେ ।

ସକାଳ ମାତ୍ରେଇ
ନାରୀ ନଥାଏ
ଗର୍ଭ କଷ୍ଟ ପାଉଥିବା ସମୟ
ଗଛ କୋରଡ଼ରେ
ଆଶ୍ରା ନିଏ ।





Digitized by PPRACHIN, SOA

# ଦୁର୍ଭିକ୍ଷ

ଗଛ କାନ୍ଦିଲେ
ପତ୍ର ଲୁହ ହୁଏ
ନଈରେ ବନ୍ୟା ଆସେ ।

ବହୁ କୁଟୁଂବୀ
ମଣିଷ, ଅଭାବରେ କାନ୍ଦେ ।

ଦୁର୍ଭିକ୍ଷ
ଅଭାବର ଅନ୍ୟରୂପ
ଗଛକାନ୍ଦି ପାରେନା
ନଈ ଝପଟି ଯାଏନା
ଘୋଡ଼ା ଚଢ଼ି
ପ୍ରିୟ ସହରକୁ ।

ଗଛ
ପହଁରୁଥାଏ ସମୟରେ
ସମୟ ନିଜର ପ୍ରଭୁ ସାଜି
ଲହରେଇ ଦିଏ ବସଂତ
ପାଣି ଭିତରେ
ଶିଶୁଟି ଖେଳୁଥାଏ
ଜହ୍ନ ସହିତ ।

ଏବଂ ନଈ
ଉଠି ପଡ଼ି ଧାଇଁ ଯାଏ
ଦୂରକୁ ଦୂରକୁ
ଗଛ
ସାଉଁଟୁ ଥାଏ ଦୁର୍ଭିକ୍ଷତଳୁ
ନିଜ ପତ୍ରକୁ
❑



Digitized by PPRACHIN, SOA

# ଆତଂକ

କିଏ ବ୍ୟାପିଛି ଆକାଶମୟ ?
ନୀଳ ମାଖି
ସୟତାନ
ହାତ ପାତିଛି ଜହ୍ନକୁ ।

ସୂର୍ଯ୍ୟ
ଉଗ୍ରପନ୍ଥୀର ମୃତ ଦେହ ପରି
ପରିଚୟ ହୀନ ।

କିଏ ଜଣେ ମାଗୁଛି
ଦିଗନ୍ତକୁ ସାକ୍ଷୀରଖି
ସମୁଦ୍ରର କବିତା
ଜହ୍ନର ବନିତା
ଓ ଅରଣ୍ୟର ନବନିତା ।

ଚିତ୍ରକର ଗୋଟିଏ ତୂଳୀରେ
ଆଂକି ଦେଉଛି
ଜରାୟୁରେ ବିସ୍ଫୋରଣ
ଆକାଶ ସାରା
ହାଲ୍ଲୋଜମୟ
ସୂର୍ଯ୍ୟ ସାରା
ଶୀତଳ ବିସ୍ତାର
ଜହ୍ନରେ ଜହ୍ନରେ
ଉଷ୍ଣ ପ୍ରସବଣ
ଜଙ୍ଗଲ ଭିତରେ କଳାଙ୍କୁର ।



Digitized by PPRACHIN, SOA

ଚିତ୍ରକର
ତୂଳୀ ଉଠାଇ ଫ୍ରିଜ୍
ଅଧାକଟା ଗଛ ସହିତ
ଗଛ  କଟାଳୀ ଫ୍ରିଜ୍
ସୂର୍ଯ୍ୟ ଦିଗନ୍ତର
ନୀଳ ତୁମା ଭିତରେ ଫ୍ରିଜ୍  ।

ଆଲୋକ  ରୂପାନ୍ତରିତ
ମଞ୍ଚରେ ଆସୀନ ରାଜା
ବିଦୂଷକ
ଖଣ୍ଡିଏ ଦଦରା ନାଆ
ଭିତରେ ପୃଥିବୀ
ପଣ୍ଡିତେ ଶ୍ଳୋକ ସଜାଡ଼ି
ପ୍ରମାଣ ଦେବାରେ ବ୍ୟସ୍ତ ।

ଏତିକି ବେଳେ
ସାପଟିଏ ଉଠି ଆସୁଚି
ସାପ
ତା ଜିଭ ଯେମିତି
ମହାକାଳ
ତା' ଗତି
ବ୍ୟାପି ଯାଉଛି ପୃଥିବୀସାରା

ପ୍ରତାରକ ସମୟର ଭାଗ୍ୟରେ
ଲିପିବଦ୍ଧ ସଂପର୍କର ଔଦ୍ଧତ୍ୟ
ନୀଳ ଅକ୍ଷରର ସସେମିରା  ।
❑



Digitized by PPRACHIN, SOA

# ସ୍ୱପ୍ନ

ପକ୍ଷୀ ବାହୁନିଲେ ହିଁ
ମୋର ସକାଳ ।
ଉଚ୍ଚାଟ ଗଛପରି
ମୁଁ ଚେଇଁଥାଏ
ସାଧନା ଜାରିରଖେ
ଏକ ଅମୃତ ମୟ
ସ୍ୱପ୍ନ ପାଇଁ

ଗଛ ଡ଼ାଳରେ ଫଡ଼ ଫଡ଼
ଚଢ଼େଇ
ଆକାଶ ସାରା କଡ଼ ମଡ଼
ମେଘ
ଗଙ୍ଗା ସୁଅରେ ଜଡ଼ ସଡ଼
ଆସାଡ଼ ଶରୀର
ଏ ମୋର ସ୍ୱପ୍ନ

ହଳେ ହାତ କଡ଼ି
ଭଂଗା ଡ଼େଣା
ଏକ ବିନ୍ଦୁ ଲୁହ
ମୋର ସଂବଳ ।

ସମୟ ସଦଳ ବଳେ
ହାଜର୍
ମୋର ଜମ୍ାନବନ୍ଦୀ



Digitized by PPRACHIN, SOA

ନେବାକୁ
ମୋର ସଂପତ୍ତି ବ୍ୟାଜ୍ୟାପ୍ତ
କରିବାକୁ ।

ମୋ ଘର ଖୋଲିଲା
ବେଳକୁ
ଫିଟି ପଡ଼ିଚି ଟେବୁଲ ସାରା
ପ୍ରେମିକାର ନିଦ
କାନ୍ଥ ସାରା ଓଠର ଚିତ୍ର ।
ମୋ ବେଡ଼ରେ ସ୍ପଷ୍ଟ
ଅସଂଖ୍ୟ ତାରିଖ ।

ଏ ସବୁ ଭିତରେ ସମୟ
ଯାଚି ଦେଲା ସ୍ୱପ୍ନ
ମୁଁ ମାଗି ନେଲି
ମୋର କଲମ ଓ
ଡାଏରୀ

ପ୍ରଥମ ପୃଷ୍ଠାରେ
ସମୟର ଅଟୋଗ୍ରାଫ୍
ଭିତରେ ଝୁକ୍ ମକେଇ ଗଲା
କା'ର ବଂଦୀତ୍ୱ
କା'ର ଲୁହ
କା'ର ଭଂଗା ଡ଼େଣା ।

ମୁଁ ସ୍ୱପ୍ନ ସୁରୁ କଲି
ଗଛର ସୀମନ୍ତରୁ



Digitized by PPRACHIN, SOA

ପାଳଭୂତରୁ
ବାଉଁଶ ଫୁଲର ହସରୁ
ଏବଂ
ତାଳ ଗଛର ଜହ୍ନରୁ ।

ରାତି ରାତି ପକ୍ଷୀ
ବାହୁନେ
ମୁଁ ଆକ୍ତା ମାକ୍ତା ହୁଏ
ନିଦ ବୋଲି
ଦରାଣ୍ଡିଲା ବେଳକୁ
ସ୍ୱପ୍ନ ସ୍ୱପ୍ନ ଲାଗେ ।





Digitized by PPRACHIN, SOA

# ଦୁଃଖ

ଶବ୍ଦ କଣ ? ଅରଣ୍ୟରେ
ବାଘକୁ ନିର୍ବାସିତ  କରାଯାଇ ପାରେ
ବାଘକୁ ଗୋଟିଏ ଶବ୍‌ଦରେ

ମୁଁ ବୁଲିଲା ବେଳେ ବି
ଜଙ୍ଗଲ ବିଷର୍ଣ୍ଣ ଦିଶୁଥାଏ
ବାଘ କୋଳରେ ହରୀଣ ଧରି
ଶବ୍‌ଦର ଦୁଃଖ  କଣ ?

ବାଘ ପଛରେ ପଛରେ
ଗୋଡ଼ାଇ ଥାଏ ମୃଗ
ମୋତେ ଖା, ମୋତେ ଖା
ଖାଏ ନାହିଁ  ବୋଲି ଦୁଃଖ
ମୃଗର, ତୋର

ଆକାଶ ରେଶମୀ ଗାଲରେ
ଲୁହ ଟୋପା ଟୋପା
ଲାଲ ଲାଲ
ଦେଖିବ ଚାଲ, ଦେଖ ଦୃଶ୍ୟ
ଦୁଃଖ କଣ ଶବ୍‌ଦର ?

ଅରଣ୍ୟରେ ଛାଇ ନଥିଲେ
ନଦୀର ତରଳ ବୁକୁରେ
ମାଛ ଭାସୁଥାଏ
ବାଘର ଦୁଃଖ କଣ ?
ଶବ୍‌ଦ ନଥିବା
ଅରଣ୍ୟରେ ।





Digitized by PPRACHIN, SOA

# ତୁମେ

ତୁମେ ଜୀବିତ
ମୁଁ ତୁମକୁ ସ୍ପର୍ଶ କଲି
ତୁମେ ସଂକୁଚି ଗଲ
ମୋ ଜାଲରେ ତମକୁ
ସାଉଁଟି ନେଲି.
ତମେ ପାଲଟି ଗଲ
ଚିତ୍ରିତ ସମୟ ।

ଅସଂପୂର୍ଣ୍ଣ ଦିନ ପରି
ତମର ଆବିର୍ଭାବ
ପବନ ରେ ତୁଷାରର ଛୁଆଁ
ଆମେ କିନ୍ତୁ ଇଚ୍ଛାର ମୃଗୟାରେ
ତୁମାକୁ ଘୋଡ଼ାଇ ଦେଉ
ସ୍ମୃତିର ମିଥୁନ ଲଗ୍ନରେ ।

ଛାଇଟିଏ ଗଢ଼ିବାକୁ
ଏବେ ଗଛ ନାହିଁ
କ୍ଷତ ପୂରିଛି ଜୀବନ ସାରା
ପୃଥିବୀ କହୁଛି ଆ ଆ
ମାରାତ୍ମକ ସ୍ୱପ୍ନ ପରି ବଢୁଛି
ମଣିଷ
ଚିତ୍ରିଛି ହଂସ ଯେ
ଗିଳି ଯାଉଛି ମାନଚିତ୍ରର ଦ୍ରାଘିମା ।



Digitized by PPRACHIN, SOA

ତମେ ଜୀବିତ ?
କୁହୁଡ଼ିଆ ଆକାଶ ତଳେ
ମୁଁ ତମର ରଂଗ ଦେଖୁଛି
ମେଘର ପରଦା ଏଡ଼ାଇ
ପବନକୁ ଛୁଇଁ ଦେଉଛି ।

ଶବ୍ଦ ଭିତରେ
ତମର ରୂପାନ୍ତର
ଅଥଚ ମୁଁ ଛୁଇଁ ଦେଲି ଯେ
ପାଲଟି ଗଲ ବ୍ୟଥାର ସାଗର





Digitized by PPRACHIN, SOA

# ଶିମିଳିପାଳ

ଆକାଶର ଆଖିରେ
ଧୂଳି ଜମିଛି
ପବନ ଦିନରାତି କାନ୍ଦୁଛି
ମୁଁ ଭିଡ଼ଓ ଦେଖୁଛି
ଶିମିଳିପାଳର ଲୁହରେ ।

ଜଙ୍ଗଲ ଧୋଇ ସାରିଚି
ନିଜର ବଦ୍‌କରା କେଶକୁ
ପଶୁ ମାନଙ୍କ ମୁହଁରେ
ଆତଙ୍କ ନେଶି ହୋଇଛି ।

ହରିଣୀର ଚାହାଁଣୀରେ
ରୂପାୟିତ ଦୁର୍ଗ ଭୁଷୁଡ଼ିବାର ମୁହୂର୍ତ୍ତ
ଏବଂ ଏକ ମାର୍ମିକ ଭୂମିକଂପ ।

ଶିମିଳିପାଳ ପାଇଁ
ଗର୍ବ କରିବାର କିଛିନାହିଁ
ମେଘାସିନୀ ଆୟୁତ ଯୁଗର ତପସ୍ୱୀ
ବାୟୋନେଟ ଆଗରେ
ଝୁଲୁଚି ମେଞ୍ଚାଏ ଶାଗୁଆ ସ୍ମୃତି ।

ବାଘକୁ ଆଙ୍ଗୁଠି ଦେଖାଇ
ଶିଶୁଟିଏ ଠିଆ
ଏବେ ପୃଥିବୀ ଆମର



Digitized by PPRACHIN, SOA

ଏବେ ଆକାଶ ଆମର
ଘୋଷଣା କଲେ ଅଜସ୍ର ଠେକୁଆ ।

ଅଜଗରର ଜିଭ
ଭୂଗୋଳକୁ ଚାଟିନେଉଛି
ଇତିହାସର ଫାଟ ଭିତରୁ
ଉହୁଁକି ଆସୁଚି ଏକ
ଲେଲିହାନ କାକ୍‌ଟସ ।





Digitized by PPRACHIN, SOA

# ମାଟିର ମଣିଷ

ମାଟି ଡ଼ାକେ ଆ ଆ
ଆକାଶ ଡ଼ାକେ ଆ ଆ

ମାଟି ଖୋଳା ଭିତରେ ମୋର
ଗୀତ ଝାଳ ହୁଏ ରକ୍ତହୁଏ
ବୋହିଯାଏ ଆକାଶ ଆଡ଼େ ।

ଆକାଶ ଲାଲ ଦିଶିଲେ
ଉଠି ଆସେ ତରୁଣ ସୂର୍ଯ୍ୟ
ହୃଦୟ ମେଲାଇ

ସୂର୍ଯ୍ୟ ଶୀତଳ ହେଲେ
ପକ୍ଷୀ ଉଡ଼ିଯାଏ ଗୀତ ଗାଇଗାଇ

ଅଥଚ ମୋର ମାଟିହଣା
ଚାହିଁ ରହେ
କେବେ ଦିନେ ମାଟି ଭିତରୁ
ଉଠି ଆସିବ ସୁନା ସକାଳର
ଫୁଲଟିଏ ବୋଲି ।

ମୋ ମୁଣ୍ଡରେ ଖସୁଥାଏ
ଅଦୃଷ୍ଟର ଘଣ୍ଟ
କେବେ କେବେ ଛିନ୍ନ ଫୁଲ



Digitized by PPRACHIN, SOA

ମୁଁ କିନ୍ତୁ ସବୁବେଳେ
ପ୍ରସ୍ତୁତ
ନିଜ ବଳରେ ବଳୀୟାନ୍
ମାଟି ଡ଼ାକେ
ଆକାଶ ଡ଼ାକେ
ସୂର୍ଯ୍ୟ ଉଠେ
ଜହ୍ନ ଉଠେ
ମୁଁ କିନ୍ତୁ ପଥର ମନସ୍କ
ପଥର ବନି ସାରିଥାଏ ।

ମୋ ଗୀତ ପ୍ରତିଧ୍ୱନି ହୋଇ
ଫେରୁଥାଏ
ମୋ ଛାଇର ଅଜଗର
ପ୍ରତିଧ୍ୱନିକୁ ଗିଳି
ସମୟର ଶେଯରେ
ଭିଡି ମୋଡ଼ି ହୁଏ ।

ମାଟି ଡ଼ାକେ ଆ ଆ
ଆକାଶ ଡ଼ାକେ ଆ ଆ
ମୋ ମାଟି ହଣା
ଛାହିର୍ ଥାଏ
ଆକାଶ ଓ ମାଟି ଏକାତ୍ମ
ହେବା ଯାଏ ।





Digitized by PPRACHIN, SOA

# ଟେବୁଲ୍ ଉପରେ ଗଛ

ଗଛ
ଖୋଜା ଚାଲିଛି :
ଗଛର ପୁରାତତ୍ତ୍ୱ
ଖୋଜୁଛନ୍ତି ଗବେଷକ
ଐତିହାସିକ ।

ନିରୀହ ମଣିଷକୁ
ଏଡ଼ାଇ ଦିଆ ଯାଇଛି

ସହରୀ ଲୋକଙ୍କ
ନଅଙ୍କ ଭୋକ ପାଇଁ
ଗଛ ନିଅଣ୍ଟ ।

ଶାଳ, ଶାଗୁଆନ, ଶିଶୁ
ପିଆଶାଳ ଏପରିକି
ଲାଜକୁଳି ଓ କୁରେହିଁ ।

ନେତାମାନେ
ତଦନ୍ତ କମିଶନ ବସାଇ
ଗୋଟିଏ ରାଜିନାମା
କରିନେଲେ ଏ ଭିତରେ

ଗଛ ମାନଙ୍କୁ
ବିଦେଶୀୟ ଶରଣାର୍ଥୀ
ପରି



Digitized by PPRACHIN, SOA

ଥଇଥାନ କରାଯାଉ
ସହରର ରାସ୍ତାରେ
ଘାଟରେ
ପାର୍କରେ ଏବଂ ଲନ୍‌ରେ ।

ବାଘର ହେଣ୍ଟାଳ
ହାତୀର ଅତ୍ୟାଚାରରେ
ଅତିଷ୍ଠ ଗଛ
ଅନ୍ତତଃ ସହରରେ ନିରାପଦ
ରହୁ
ତା'ର ବିଶାଳ ରୂପକୁ
ବନ୍‌ସାଇ କରି
ସହରୀ ରୂପ
ଦିଆଯାଉ ।

ନେତା ମୁଖ୍ୟ
ଏବେ ଆଶ୍ୱସ୍ତ
ଘରପୋଡ଼ିର ଧୂଆଁ ପରି
ମାଙ୍କୁଛନ୍ତି ଧାବୁଆ ହସର
ନିଶକୁ
ଏବଂ
ଧିରେ ଧିରେ
ଛୁଇଁ ଦେଉଛନ୍ତି
ଟେବୁଲ ଉପର
ଗଛକୁ ।





Digitized by PPRACHIN, SOA

# ଜୀର୍ଣ୍ଣ ମାଟିର ବୁକୁ ଚିରି

ଜୀର୍ଣ୍ଣ ମାଟିର ବୁକୁଚିରି ।
ମୁଁ ଜନ୍ମିଛି ।
ମୟୁରୀ ପରି ବିନା ସଂଗମରେ
ଗର୍ଭବତୀ ସାଜିଛି
ପୃଥିବୀକୁ ସୁନ୍ଦର କରିବା ପାଇଁ
ଲୁହ ଢ଼ାଳିଛି

ମୋର ସ୍ୱର ବର୍ଣ୍ଣକୁ
ତା କାଂନ୍ଦ ସହିତ ମିଶାଇ
ଦେଇଛି
ଓଟ ପିଠିର କ୍ଷତ ପରି
ନିଜକୁ କ୍ଷତାକ୍ତ କରିଛି
କିନ୍ତୁ ତାକୁ ବୋହି
ବୁଲାଉଛି ଚିରଦିନ ।

ତା ଖୁସି ପାଇଁ ଶୋଷୁଚି ସୂର୍ଯ୍ୟକୁ
ଧନ୍ଦାଳି ଦେଉଛି ମାଟି ଭିତର
ତଳ ବିତଳ
ସବାତଳ କେନ୍ଦ୍ରକୁ
ମଣି ନାଗର ବିବରକୁ ।

ସତେ ବା
ପୃଥିବୀର ସୁଖପାଇଁ
ମୁଁ ଜନ୍ମିଛି
ସତେବା
ତାର ନିଦ ଭାଙ୍ଗି
ଚେତେଇ ଦେବାକୁ
ମୁଁ ଜନ୍ମିଛି ।




Digitized by PPRACHIN, SOA

# ଧୂଳି ମାଖିନି ଆକାଶ

ଧୂଳି ମାଖିନି ଆକାଶ
ପୃଥିବୀ ମାଖିନି ଗଛ ବୃକ୍ଷ
ବର୍ଷା ଫର୍ଷା
ଫସର ଫାଟିଗଲେ
ଦ୍ୱି ପହରରେ ହଜିଗଲା
କାହାର ଗୀତ ?

ରାସ୍ତା ବାରଂବାର
ଖସି ଯାଉଥିଲା ହାତରୁ
ସେ ଅଛି କି ନ ଅଛି
କଦାପି ଜାଣି ପାରୁ ନଥିଲା
ମାଟିର ଭାଗ୍ୟରେ ଚିରଦିନ
ସେହିଁ ଲେଖାଥିଲା ।

ମାଟିକୁ ଜାବୁଡ଼ି
କିଏ କାନ୍ଦୁଥିଲା ?
ଅକାଶକୁ ଅନେଇ
କିଏ ତରଫରା ଗଣୁଥିଲା
ସଂସାରକୁ ଖେଳଘର ମଣି
ଖେଳୁଥିଲା
ମଣିଷ ଚିହ୍ନି ଡାକୁଥିଲା
ଖେଳିବୁ ଆ' ।

ଈଶ୍ୱର ମଞ୍ଜୁର କରିଥିଲେ
କେତେ ବର୍ଗ ଫୁଟ ଭୂମି
ଏବଂ ଚେନାଏ ଆକାଶର ଛୁଆଁ ।



Digitized by PPRACHIN, SOA

ସେତିକିରେ ସେ
ଚିରଦିନ ଉଦ୍ୟମ କରୁଥିଲା
ଲେଖିବାକୁ ତା' ନାଁ

ମଣିଷ କହିଲା
ରାସ୍ତାଛାଡ଼ ଜମିଛାଡ଼
ସଭ୍ୟତାର ମାନଚିତ୍ର ହେବ

ଖାନା ପୁରି ବେଳେ
ଅମିନ ଚଢ଼ାଇ ଦେଲା
ଅନ୍ୟ କାର ନାଁ ।

ଭିଡ଼ି ମୋଡ଼ି ହୋଇ
ମାଟିରୁ ଉଠିଲା କୋହ
ଚଳିଲେ ନାହିଁ ମଣିଷ
ନିର୍ବାସିତ ହେଲେ ହିଂସ୍ରଜନ୍ତୁ

ସହର ଭିତରେ
ପଶୁ ପକ୍ଷୀ ଗଛବୃଚ୍ଛଙ୍କ ପାଇଁ
ଘର ତୋଳା ହେଲା ଶେଷରେ ।





Digitized by PPRACHIN, SOA

# ପାହାଡ଼

ପାହାଡ଼ କହିଲା ଅଛି ଅଛି
ଗଛ କହିଲା ନା
ସାମାନ୍ୟ ଚହଲି ଗଲା
ପବନ
ଏଥର ଫେରି ହେବନି
ମୂଳ ଶବ୍ଦକୁ
ଅଧାଗଢ଼ା ସ୍ୱପ୍ନର
ଘରକୁ ।

ସବୁପତ୍ର ଝଡ଼ିଗଲାଣି
ଗଛର
ସ୍ମୃତି ପାଶୋର ହୋଇଗଲାଣି
କାଲିର
ଫୁଲ ବନ୍ଦ କରି ଦେଲାଣି
ପାଖୁଡ଼ା
ଖସି ଗଲାଣି କିଶୋରୀର ରଂଗ
ଘୁମେଇ ପଡିଲାଣି
ପୃଥିବୀ ।

କଙ୍କାଳଟିଏ ପିଟି ଚାଲିଚି
ହାତୁଡ଼ି ଛାଏଁ ଛାଏଁ
ଝାଳରେ ଫୁଟି ଉଠିଛି
ସୁଗନ୍ଧ ଭରା ଫୁଲଟିଏ ।





Digitized by PPRACHIN, SOA

# ଅଳସ

ତମେ ଅଳସ ଭାଂଗିବା ଭିତରେ
ସେ ଚାଲିଗଲା
ପୁଣି କାଲି ଠିକ୍
ଏଇ ସମୟକୁ ଆସିବ ।

ଏବେ ସବୁ କଥାକୁ
ଢଗି ହୁଏନି
କିଶୋରୀଟିଏ ପ୍ରେମରେ
ପଡ଼େ
ରାସ୍ତା କଡ଼ରେ ଫୁଲଫୁଟି
ଝରୁଥାଏ ।

ଅଥଚ କିଛି
ମନେ ରହେନି ।

ନାଟକର ଶେଷ ଦୃଶ୍ୟ
ପାଇଁ ଅପେକ୍ଷା
ଟ୍ରେନ୍ ଆସୁନଥାଏ

ରୁମହୀନ ରୁଗ୍‌ଣ
କୁକୁରଟିଏ ସମୟ ସହ
ଯୁଝୁଥାଏ
ଭୀକାରୁଣୀ ଶୋଇପଡ଼େ
କୃଷ୍ଣଚୂଡ଼ାର ପେଛା ପେଛା
ଫୁଲ ତଳେ ।





Digitized by PPRACHIN, SOA

# ଇତି ... ଗଛ

ମାଟି ଦେଖେ ଆକାଶ ଦେଖେ
ପକ୍ଷୀ ବସେ, ଉଡୁଥାଏ ।

ଜଙ୍ଗଲର ନିଶ୍ୱାସ ସହିତ
ମୋର ସଂପର୍କ

ଶୁଭେ
ଆଷାଢ଼ର ପତ୍ର ମର୍ମର
ଥୁଣ୍ଟା ଗଛରେ ବଗ ।

ପଢ଼େ
ସ୍ମୃତିର ନଈରେ
ଭଙ୍ଗା ଶବ୍ଦର କବିତା
ବାଢ଼େ
ସମୁଦ୍ରକୁ ଝାଳର ତର୍ପଣ
ଆକାଶକୁ ଧୂଳିର ନୈବେଦ୍ୟ

ଖୋଜେ
ରସାତଳର ସୁନାମୁହଁ
ନାଗକନ୍ୟାର ଚକ୍‌ମକ୍ ଆଖି
ନାଗୁଣୀର ଅମୃତ ଦଂଶନ
ଦେଖେ
ପକ୍ଷୀ ଉଡ଼ି ଉଡ଼ି ଥକେ
ମଣିଷ ନେଇ ନେଇ ହାରେ



Digitized by PPRACHIN, SOA

ସାଧୁମାନେ ସ୍ୱର୍ଗାରୋହଣ
ପର୍ବରେ, ଗର୍ବରେ
ମୁଁ ତଳ ମୁହାଁ ଚିରଦିନ
ତଳକୁ ଖୋଳୁଥାଏ ।

ମୋର ଯାତ୍ରା ଜାରି ରହେ
ଆକାଶ ଆଡ଼େ ପାତାଳ ଆଡ଼େ
ମୋର ପକ୍ଷୀ ହୁରୁଡ଼ା ଜାରିରହେ
ଦିଗନ୍ତ ଆଡ଼େ ସୁରୁଜ ଆଡ଼େ
ମୋର ସ୍ୱପ୍ନ ବଣ୍ଟା ଜାରିରହେ
ମଣିଷକୁ ଈଶ୍ୱରକୁ

ଏମିତି ମୋର ନାଟକର
ପ୍ରତିଟି ଦୃଶ୍ୟ
ଅଂଧାର ଅଂଧାର
ପର୍ଦ୍ଦା ଉଠେ, ପଡ଼େ
ଶବ୍ଦ ସହିତ

ଯୌବନ ଖସୁଥାଏ
ମାନଚିତ୍ରରୁ ଉଚ୍ଛେଦ ହୁଏ
ମୋର ଭିଟା ମାଟି
ମୋର ରକ୍ତ ମାଂସ ଅସ୍ଥି
ସ୍ୱପ୍ନ ଏବଂ ସ୍ମୃତି ପଛକୁ ପଛ
ବର୍ତ୍ତମାନର ଇସ୍ତାହାରରେ
ମୁଁ ନାହିଁ ଏଣୁ ସ୍ୱାକ୍ଷର କଲି
ଇତି...... ଗଛ ।





Digitized by PPRACHIN, SOA

# ଯଶୀପୁର

ବୈଶାଖର ତାତି କମିଲେ
ଯଶୀପୁର ।
ଏଠି ନାରୀ ମାଡ୍ରେଇ ବାଘୁଣୀ
ବାଘୁଣୀ ମାଡ୍ରେଇ ନାରୀ
ଖଇରୀ ଖଇରୀ ।

ଏଇ ଶେଷ
ଏଇ ପଳାଶ
ରାତ୍ରି ପରି ନିର୍ଜନ
ଫାଲ୍‌ଗୁନ
ସୂର୍ଯ୍ୟ ଦେଖେନା ସକାଳ
ସଂଜ ସଂଜ ହିଁ କେବଳ
ବଇଂଶୀଆଳର ବେହାଗ ।

ଫୁଲ ହସେ
ବାଘ ଚାହେଁ ଜୁଳୁ ଜୁଳୁ
ଜହ୍ନ ଲୁଚିଯାଏ ହରିଣୀର ଆଖିରେ
ପ୍ରେମ ଅନବରତ
ଅଧିଷ୍ଠାନ ଜମାଏ
କୁହୁତାନରେ, ହେଣ୍ଟାଳରେ ।

ନହକା ସାନ୍ତାଳୀ ଦିହରେ
ନେଶିହୁଏ ଅନ୍ଧାର
ଝଲ ମଲେଇ ଯାଏ କବିତା
କିଏ ଛୁଇଁଲ କିଏ
ଗୀତ ବାଛୁଛି ଧାଂଗଡ଼ୀଟିଏ
ବାଛୁଛି
ଧାଂଗଡ଼ା ପାଇଁ
ପ୍ରକୃତି ପାଇଁ
ଜହ୍ନ ରାତିଟିଏ ଦେବ
ଜଣେ କାହାକୁ



Digitized by PPRACHIN, SOA

ବାଛୁଛି ନିଜେ
ନଈ ପାଲଟି ଯିବା ଆଗରୁ ।

ପଲାଶ ପରି
ଏଠି ରାତି ଜଳୁଥାଏ
ପ୍ରିୟର ବିରହରେ
ପାହାଡ଼ରୁ ପାହାଡ଼
ସଂଚରୁ ଥାଏ ଶବ୍ଦ ।
ମାଦଳର ସ୍ୱର
ଫେରାଉ ଥାଏ ଗୀତ
ଝାଳ ଭିତରେ ଦିଶିଯାଏ
ପବିତ୍ର ଦାଂପତ୍ୟ ।

ବାଘୁଣୀ ଭୁଲିଯାଏ ଋତୁ
ହରିଣୀ ହଜାଇଦିଏ ଚାହାଁଣୀ
ନାରୀମାନେ ମୟୁରୀ
ମେଘ ଉଠିଲେ
ଖୋଜନ୍ତି ପୁରୁଷ
ଯା' ପାଇଁ ଧାଂଗଡ଼ି ଗୀତ ବାଛୁଥାଏ
ଜୀବନ ସାରା
ଗୀତ ହୁଡ଼ିଲେ ବଂଧା
ପଡୁଥାଏ
ନଈ ବନି ଯାଏ ।

ନାରୀଟିଏ ହୋଇଯାଏ
ଖଇରୀ
ବାଘୁଣୀ ଦେଖାଯାଏ
ନିରୀହ ନିରୀହ
ଏମିତି ଯଶୀପୁର
ଯା' ଭାଗ୍ୟରେ
ଶିମିଳିପାଳର ଐଶ୍ୱର୍ଯ୍ୟ
ଏବଂ ପ୍ରିୟତମ ବିରହ ।
❑



Digitized by PPRACHIN, SOA

# ଖଇରୀ

ଖଇରୀ
ବିରହର ଋତୁ ।

ନିଜ ଭିତରେ ରୂପାନ୍ତରିତ
ଏକ ନାରୀ
ତପସ୍ୱିନୀ
ଶୁଦ୍ଧାଚାରୀ ।

ଭୁଲି ଯାଇଥିଲା
ଗୀତ
ଭୁଲିଯାଇଥିଲା
ନାଚ
ଜହ୍ନ ରାତି ଓ
ମାଦଳ

ଆ ସଙ୍ଗମ ପାଇଁ ଆ
କହିଲେ
ମସ୍‌ଗୁଲ୍ ପ୍ରକୃତି
ଆ ସଙ୍ଗମ ପାଇଁ ଆ
କହିଲେ
ନୀରବ ବାଘ ।

ମାତୃତ୍ୱର ଦାୟରେ
କାନ୍ଦଣା ଶୁଭେ
ଗଛ ବୃଛର



Digitized by PPRACHIN, SOA

ବଂଧ୍ୟାତ୍ୱର ବିଭୀଷିକା
ଠପ୍ ଠପ୍ ଖସେ
ଶୀତ ଋତୁର କାକର
ହୋଇ ।

ପଳାଶ ଫୁଲ ପରି
ହୃଦୟ ଲାଲେ ଲାଲ ହୁଏ
ବୈଶାଖରେ ।

ଖଇରୀ
ଭୁଲିଯାଏ ନାରୀତ୍ୱ
ସନ୍ତାନବତୀ ହେବାର
ସୌଭାଗ୍ୟ ।

ଏମିତି ଏକ ବିରହୀ
ଋତୁହୀନ ସମୟର
ସାମ୍ରାଜ୍ଞୀ ଖଇରୀ
ବାଘୁଣୀ ଭିତରେ
ଅପରୂପା ନାରୀ
ନାରୀ ଭିତରେ
ଚିର ଗୁଂଫିତ
କାନ୍ଦଣା ଲହରୀ ॥





Digitized by PPRACHIN, SOA

# ନଦୀ ଡ଼ାକିଲା

ନଦୀ ଡାକିଲା
ଆ,
ଗଛ ଝପଟି ଗଲା
ପ୍ରିୟ ପୁରୁଷ ପରି ।

ପବନ ଡ଼ାକିଲା
ଆ,
ଗଛ ନଇଁଗଲା
ବଶଂବଦ ପ୍ରଜାପରି
ନିଆଁ କହିଲା
ଆ
ଗଛ ଝାସ ଦେଲା
ନିରୀହ ପତଙ୍ଗ ପରି ।

ମଣିଷ କହିଲା
ଦେ,
ଗଛ ଦେଇଦେଲା
ସର୍ବସ୍ୱ ଦଧିଚୀ ପରି

ଅକାଶ କହିଲା
ତୁମି ଯା,
ମାଟି କହିଲା
ଆଲିଙ୍ଗି ଯା'

ଅଥଚ ଗଛ
ନୀରବ ଥିଲା ।





Digitized by PPRACHIN, SOA

# ଅନ୍ଧାର ଭିତରେ କଣ ଦିଶେ

ଅନ୍ଧାର ଭିତରେ କଣ ଦିଶେ
ସକାଳ ପରି ରାତି
ନା ରାତି ପରି ସକାଳ
କୋଇଲିର କୁହୁ
ନା ବାଘର ହେଣ୍ଟାଳ ।

ମାଟିରୁ ନିର୍ବାସିତ ଗଛର ସଂଦେଶ
ପୁଣି ଫେରେ
ଆକାଶରୁ ଓହ୍ଲାଇ ଆସେ ନକ୍ଷତ୍ରର
ବୀଜ
ସମୁଦ୍ର ଯୁଦ୍ଧବଂଦୀ ପରି
ପିଂଧିଥାଏ ପ୍ରତାରଣାର ଶୃଂଖଳ ।

ଏମିତି ପ୍ରକୃତିର
ଗର୍ଭ ସମୟ
ଅଂଧାର ଭିତରେ ଅଂଧାରର
ସଂଗମ
ମାଟିର ତାତିରେ
ଭାଙ୍ଗିଯାଏ ଚେତନାର ନିଦ
ଶତ ସହସ୍ର ତନ୍ଦ୍ରାର ପହଡ଼
ଅଂଧାର ଅଂଧାରହୀନ ହୁଏ
ତଂଦ୍ରା ହୀନ ହୁଏ ତଂଦ୍ରା

ଦୂରରୁ ଡାକୁଥାଏ ଶୃଗାଳ
କିଏ କହେ କୁହୁ



Digitized by PPRACHIN, SOA

କିଏ କହେ ହେଣ୍ଟାଳ
ମୋର ପ୍ରଥମ ପଦପାତରେ
ଗର୍ଭବତୀ ହୁଏ ପାତାଳ
ମୋର ଦ୍ୱିତୀୟ ପଦରେ
ଆକାଶ
ତୃତୀୟ ପଦପାଇଁ
ଲୋଡ଼ା ପୁନର୍ଜନ୍ମ
ନୀଡ଼ଫେରା ଚଢ଼େଇଙ୍କ
ଗୀତରେ ସକାଳ ।

ଏୟା ବୋଧେ ଅଂଧାରର
ଭବିଷ୍ୟତ
ତମ ଓଠରୁ
ମୋ ଓଠର
ଦୂରତ୍ୱ ।

ଏତେ ଲୁହ : ଏତେ ଯେ ଲହର
ସବୁ ମୋର ଶୂନ୍ୟରେ
ଡାଳ ମୋର ପାତାଳରେ
ଜୀବନ ଖୋଜେ

ମୁଁ ଖୋଜେ
ମାଦଳ ଓ ବଇଁଶୀର ସୁର
ଧାଙ୍ଗଡ଼ୀ ଚୂଡ଼ିର ଝଣ୍‌ତକାର
ଭୁଲିଯାଉଥିବା ଶୀତର ଲହର
ଏବଂ ଜୀବନଯାକ
ଅଜଣା ଏକ ଧାଙ୍ଗଡ଼ାର



Digitized by PPRACHIN, SOA

ଅଗଣାରେ ବଂଧା ପଡୁଥିବା
ଛେଳିର ଜୀବନ

ଅଭିଶପ୍ତ ଗଛ ପରି
ନୀରବତାର ଐଶ୍ୱର୍ଯ୍ୟକୁ ପିଇ
ଗଢୁଥାଏ ପ୍ରୀତିର ନିଃଶ୍ୱାସ ।

ଏମିତି ଅଂଧାର ଆସେ ରାତିଭର୍ତ୍ତି
ଜୀବନରେ
ଗୀତହୀନ ଯୌବନରେ ଭରିଯାଏ
ହାହାକାର
ନାଗ-ଅଇରୀ ମାଡ଼ିଯାଏ ବଣସାରା ।
ହଜିଯାଏ ଶାଳଫୁଲର ସଂଗୀତ ।

ଅଂଧାର ତେବେ କେମିତି ଦିଶେ
ଚମ ଧୁଡ୍ରୁ ଧୁଡ୍ରୁ ବୁଢ଼ିର ଭାଗ୍ୟପରି
ନା ପ୍ରକୃତି କୋଳର ପଳାଶଫୁଲ ପରି
ଅଂଧାର ସବୁବେଳେ
ଅଂଧାରହୀନ
ଭାଗ୍ୟ ନଥାଏ  ଭଗବାନ ନଥାଏ
ସୟତାନଟିଏ ଶିଶୁ ପାଲଟି
ଫିକ୍ ଫିକ୍ ହସୁଥାଏ ।

ଅଦୃଷ୍ଟରେ ବଂଧିଦେଇ
କୁତ୍ସିତ ସଂସାର ଓ ସଂସାରେ ଦୁଃଖକୁ ।



Digitized by PPRACHIN, SOA

ଅଂଧାର ଭିତରେ କଣଥାଏ ଯେ
ଫେରାଇ ଦିଏ ଚଢ଼େଇଙ୍କୁ
ପିଞ୍ଜରାରୁ ବନସ୍ତକୁ
ଶୂନ୍ୟରୁ ଶବ୍ଦ ତୋଳିଦିଏ
କବିକୁ
ଗୀତ ଫେରାଇ ଦିଏ
ପରାଜିତ ଧାଙ୍ଗଡୀକୁ
ଅପହୃତ ସଂପର୍କର ଧାରା
ରକ୍ତକୁ ।

ଅଂଧାର ଭିତରେ କଣ ଦିଶେ
ଜୀବନ
ନା ଦୁଃଖର କୁଞ୍ଜବନ ।

ଜଙ୍ଗଲରେ ଝରାପତ୍ରର କାରୁଣ୍ୟ
ନା
ମେଘର ଓଦା ଆଲିଙ୍ଗନ
ସମୁଦ୍ରର ଯଂତ୍ରଣା ପରି
ଆକାଶର ଦୁଃଖ ପରି
ନିର୍ମୋହ ମାଟିର ଆକର୍ଷଣ ପରି
ଅଂଧାର ସହିତ ମୋର
ନିବିଡ଼ ସଂପର୍କ ।

ଅଂଧାର ଭିତରେ ମୁଁ ହଜେ
ମୋ ବାଟ ହଜେ
ଦିଗନ୍ତର ଆଢୁଆଳେ ଗୋଧୂଳିର ରଙ୍ଗ
ସକାଳର ପ୍ରାଚୁର୍ଯ୍ୟରେ
ସ୍ନିଗ୍ଧ ଜହ୍ନିଫୁଲ ।



Digitized by PPRACHIN, SOA

ଅଂଧାର କୋଳରେ
ସୟତାନ ଶିଶୁ ହୁଏ
ସମୟ ତୃଣଭୋଜି ପରି
କରୁଥାଏ ଦୈନନ୍ଦିନ ଦୁଃଖର
ପାକୁଳି ।

ମୁଁ
ସାଉଁଟୁଥାଏ ଶବ୍ଦ
ଗାଉଁଲି ବୋହୂଟିଏ
ସାଉଁଟିଲା ପରି
ଝାଟିମାଟି
ଘର କରଣାର

ଅଂଧାର ଭିତରେ କଣ ଦିଶେ
କବି ଚକ୍ଷୁଷ୍ମାନ ହୁଏ
ସଚରାଚରର
ସୂକ୍ଷ୍ମ ଚେତନାକୁ
ଛୁଏଁ
ଅଂଧାର ନିଜର ନିଜର
ଲାଗେ ।

ବେଳେ ବେଳେ ଅଂଧାର
ମନେହୁଏ ଅତି ଆପଣାର
କଇଁପରି ଜହ୍ନ ପରି
ପ୍ରିୟତମାର ପ୍ରଥମ ଚୁମ୍ବନ ପରି
ଲୁହକୁ, ଶୂନ୍ୟକୁ, ମୃତ୍ୟୁକୁ
ତା' କୋଳରେ ଆଶ୍ରାଦିଏ



Digitized by PPRACHIN, SOA

ପାହାଡ଼ି ଝରଣା ପରି
ଧୋଇଦିଏ ପାହାଡ଼ ପ୍ରକୃତି
ମେଘ ଆଉ ଚଢ଼େଇର ସାମ୍ରାଜ୍ୟକୁ
ଛୁଇଁଦିଏ ପ୍ରେମର ବିଭୂତି
ଅଂଧାର ପ୍ରିୟା ମୋର
ଜୀବନର ପ୍ରଣବ ଓଁକାର
ଅଂଧାର ଭିତରେ ମୋର
ଆସକ୍ତି ଓ ଅନାସକ୍ତି ଖେଳ
ସମୟର ନୀଳାଭ ସକାଳ ।

ଅଂଧାର ଭିତରେ କଣ ଦିଶେ ?
ସକାଳ ପରି ରାତି
ନା ରାତି ପରି ସକାଳ
କୋଇଲିର କୁହୁ
ନା ବାଘର ହେଣ୍ଟାଳ ।





Digitized by PPRACHIN, SOA

# ବିଦ୍ରୋହ

ଗଛ ଗତିହୀନ
ମୁଖା ଭିତରେ ମୁଁ ବିଚଳିତ
ଧ୍ୱଂସ ଭିତରୁ ଶିଶୁ ସଂଭବୁ ନଥିଲେ
ଗର୍ଭବତୀ ମା'ର ଜରାୟୁରେ
ଲୋହିତ ବିପ୍ଳବର ଭ୍ରୁଣ
ସମୟ ପ୍ରତୀକ୍ଷାରେ ।

ଏକ ଶୀତଳ ଜ୍ୟୋସ୍ନା
ଚନ୍ଦ୍ରକୁ ମୁକ୍ତି ମାଗିଲା ବେଳେ
ଏକାନ୍ତ ମୁହୂର୍ତ୍ତ ସବୁହାତ ଟେକି
କଦମ୍ ତାଲ୍‌ରେ
ଉନ୍ମୁକ୍ତ ମସ୍ତିଷ୍କ ଭିତରେ
କେଉଁ ନାଟକ ଅଭିନୀତ ?
ନା କହି ପାରିଲେ ଈଶ୍ୱର
ନା ଜରାୟୁରେ ଅପେକ୍ଷାରତ ଭ୍ରୁଣ ।

ଗଛ ଯେତେବେଳେ ଯା' କହିଲା
ଝଡ଼କୁ
ପକ୍ଷୀ ଯେତେବେଳେ ମନକଲା
ନୀଡ଼କୁ
ମା ଗର୍ଭରୁ ଖସି ପଡ଼ିଲା
ଜ୍ୱଳନ୍ତ ଅଗ୍ନି ପିଣ୍ଡଟିଏ ।

ଫୁଲଟିଏ ଫୁଟିଲା ଅରଣ୍ୟରେ
ମଳୟ ପ୍ରବାହିତ ହେଲା
ସଦ୍ୟ ପ୍ରସୂତ ଶିଶୁ
ଘୋଷଣା କଲା
ବିଦ୍ରୋହର ଇସ୍ତାହାର ।





Digitized by PPRACHIN, SOA

# ସମୁଦ୍ର ସାମ୍ନାରେ

ଲହଡ଼ି ଭିତରେ  ହଜିଗଲି
ବୋଲିତ
ଜୀବନସାରା ଖୋଜୁଛି ମୋର
ପ୍ରେମକୁ, ଆୟୁଷକୁ
ଗାଳିକରୁଛି ନିର୍ଲ୍ଲଜ ଈଶ୍ୱରକୁ ।

ଝାଉଁ ବଣରୁ କେହିଜଣେ
ଗୀତ ଗାଉଛି
ସମୁଦ୍ର ଭିତରୁ ଆଦେଶ ଶୁଭୁଛି
ସାବଧାନ, ଜୀବନସାରା ଦୁଃଖ
ତମର ସାଥୀ, ହଜିଯିବା ତମର
ଭବିତବ୍ୟ ।

ସମୁଦ୍ର ମାନେ ତମର
ବିକଳାଙ୍ଗ ଦେହର ନକ୍ସା ।

ଦେଖ, ସମୁଦ୍ର ତମକୁ ଠିକ୍
ଚିହ୍ନିଚି ବୋଲି କୋଳେଇ ନିଏନି
ବାରଂବାର ବେଳାକୁ ଫିଙ୍ଗିଦିଏ ।

କାହାର ବିଦ୍ରୋହକୁ
ମୁଣ୍ଡ ଟୁଙ୍ଗାରେନା
ମଣିଷର ନିରୁଦ୍ଦିଷ୍ଟ ଭାଗ୍ୟକୁ
ବିଛେଇଦିଏ ବାଲୁକା ଶଯ୍ୟାରେ
ଅଚିହ୍ନା ପ୍ରିୟାର ରକ୍ତାକ୍ତ ପାଦକୁ
ଫିଙ୍ଗିଦିଏ ମୁଠା ମୁଠା ଲୁଣିହାଓ୍ୱା
ଉଡ଼ନ୍ତା ପକ୍ଷୀର ଗଜଲକୁ
ଏକାତ୍ମ କରିଦିଏ ନୋଳିଆ ବସ୍ତିର
ହୋ ହାଲ୍ଲା ସହ  ।



Digitized by PPRACHIN, SOA

ଭିଡ଼ ଭିତରକୁ ଠେଲିଦିଏ
ମୁହାଁଣର ସ୍ୱପ୍ନ, ଅଙ୍କନଦୀର
ସମର୍ପଣ ।

ସମୁଦ୍ରକୁ ମୋର ବୋଲି କହିବାରେ
ଅତଡ଼ା ଖାଏ ତଟ
ଧ୍ୱଂସହୁଏ ଝାଉଁବଣ
ମଣିଷର ଭିଟାମାଟିରେ ବାଲୁ ଚରିଯାଏ
ଲହଡ଼ି ଭିତରେ ମୁହଁ ଶତ୍ରୁ ହୁଏ
ସମୁଦ୍ର ଭିତରେ ଫୁଲୁଥାଏ ଦୁଃଖ ।
ଆକାଶ ଖାଇ ଗୋଡ଼ାଉ ଥାଏ
ମିଛ ଦେହର ଦାୟରେ ।

ସମୁଦ୍ରରୁ ଉଠୁଥାଏ ଭଲ ପାଇବାର
ବାଷ୍ପ ଆକାଶକୁ କାବୁକରି ।

ମୁଁ ଥମ ଥମ ବର୍ଷୁଥାଏ
ନିର୍ଭେଜାଲ ଦୁଃଖମାନଙ୍କୁ
ନିଜର ପ୍ରତିଦ୍ୱନ୍ଦୀ ସଜାଇ ।

ମୁଁ ବିଶ୍ୱାସ କରିପାରେନା
ସମୁଦ୍ରକୁ
ମୁଁ ପ୍ରେମ କରିପାରେ ନା
ଆକାଶକୁ ।

ତେବେ ମୁଁ ହଜିଛି ନା
ଅନ୍ତରଙ୍ଗ ଦୁଃଖର ଲହଡ଼ିରେ
ମୋର ବିପନ୍ନ ଅଦୃଷ୍ଟକୁ
ଖୋଜୁଛି ?





Digitized by PPRACHIN, SOA

# ଚଢ଼େଇ ନଥାଏ

ଗଛପରି ପାଦ  ମାଟିରେ
ମଥାନ ଆକାଶରେ
ଚଢ଼େଇ ଟିଏ ଆସେ
ପୁଣି ଉଡ଼ିଯାଏ ।
ହୃଦ ତଳ ଖାଁ ଖାଁ ଲାଗେ
ଡ଼ାଳ ପତ୍ରକୁ ଆଉଁସି
ମନ ଖୋଜେ
କଣ ଖୋଜେ
ଚଢ଼େଇ ନଥାଏ  ।

ପତ୍ର ଝଡ଼େ କଅଁଳେ
ଶୀତର କାଲୁଆ ପବନ
ମଳୟ ପାଲଟେ
କଢ଼ିଟିଏ ଖୋଲିଦିଏ
ହୃଦୟର ଦ୍ୱାର
ସବୁ ଅଂଧାର
ବସା ବା'ରେ ଝୁଲୁଥାଏ
ବାଇଆ ନଥାଏ
ଗଛ ଡ଼ାଳ ପତ୍ର ମେଲି ବସିଥାଏ
ମାଟିରେ ପାଦ
ଆକାଶରେ ମଥାନ
ହୃଦତଳ ଖାଁ ଖାଁ
ଶ୍ମଶାନିତ ଅରଣ୍ୟ  ।

ନା ଫେରିବାର ଆଶାଥାଏ
ନା ଫେରେ
ଚଢ଼େଇ ନଥାଏ ।





Digitized by PPRACHIN, SOA

# କଣ ମାଗିବୁ କାହାକୁ

କଣ ମାଗିବୁ କାହାକୁ
ସତରେ !
ଆକାଶ ଆକାଶ ପଥରେ
ନୀଳ ବାଣ୍ଟୁଛି,
ମାଟି ମର୍ତ୍ତ୍ୟରେ
ବୈକୁଣ୍ଠ ରଚିଛି ।

ଚଢ଼େଇ ଉଡୁଛି ଆକାଶ ଛୁଇଁ
ନୀଳ ଭିତରେ ନୀଳ ହୋଇ
ଚଢ଼େଇର ଥଣ୍ଟରୁ
ମାଟି ଚେନାଏ
ପାଣି ଟୋପାଏ
ମାଗିଲୁ ଜୀବନ ପାଇଁ ଯେ
ସେ ମହା ଶୂନ୍ୟରେ ।

ତୁ ଭରସି ପାରିନୁ କାହାକୁ
ମାଗିବା ପାଇଁ
ଅଥଚ ଖୋଲି ଦେଇଛୁ
ଦାନପତ୍ର
ସଭିଙ୍କ ପାଇଁ ।

ଏମିତି ଲୋକ କଥାଟେ ତୁ
ଥାଉ ଥାଉ
ଇତିହାସ ପାଲଟି ଯାଉ ।
ତୋତେ ଅତୀତରେ ଦେଖିଥିଲି



Digitized by PPRACHIN, SOA

ଚୁମିଥିଲି ଆଉଁସିଥିଲି
ମଧୁ ବାସ୍ନାଟେ ହୋଇ
ହୃଦୟରେ ବସା ବାନ୍ଧିଥିଲୁ ।

ସ୍ୱପ୍ନରେ ତୋତେ
ଯାଚଞ୍ଚା କରୁଚି
ଆ-
ପୁଣିଥରେ ମାଟିର ଶ୍ୟାମଳିମା
ଆକାଶର ନୀଳକୁ
ମାଖି ଯା ।'





Digitized by PPRACHIN, SOA

# ସୃଷ୍ଟି

ଅଜସ୍ର ଦୁଃଖ
କଦମ ତାଲରେ
ଗଛ
ଲଣ୍ଡା ସନ୍ୟାସୀ ପରି
ଝଡରେ ।

ଏ...........ଆସ
ଦେଖ........ସମୟ
ଓଃ..........ତମେ
ଆସୁଚି.......ପ୍ରଳୟ

ସମ୍ରାଟ ଉଠିଲେ
ଶିଶୁ
ହସେ
କଦଂବ ଫୁଟିଲେ
ନାରୀ
ନାଚେ ।

ନଈ
ବାଟ ଭୁଲୁ ଭୁଲୁ ସ୍ମୃତି
ନାରୀ
ଆନ ମନା ହେଉ ହେଉ
ସୃଷ୍ଟି ।

ନଈ ନାରୀ
ସ୍ମୃତି ସୃଷ୍ଟି
ଝଡ଼ରେ ଏକାକାର
ଗଛ ଦୁଃଖ
ସମୟ ପ୍ରଳୟ
ସନ୍ୟାସରେ ନିର୍ବିକାର





Digitized by PPRACHIN, SOA

# ବୋଝ

କବିତାର ନାମ କଣ ଦେଇହୁଏ
ଯନ୍ତ୍ରଣାର ତୀରେ ତୀରେ
ଗଛ ହିଁ ହେବାକୁ ହୁଏ ।

ନା କହିହୁଏ
ନା ରହିହୁଏ ।

ମଣିଷ ଖୋଜୁଛି ଖେଳ
ମଣିଷର କାଳ ;

ଅଭିନୟ ସାରା ଜୀବନ
ସମୟର ପଦଯାତ୍ରାରେ
ସଂତ୍ରସ୍ତ ଆତ୍ମା
ଅଂଧ ବିବେକ
ନିର୍ବାସନର ବଳୀକାଷ୍ଠରେ
ବକ୍ର ମୁଣ୍ଡରେ
ଅପେକ୍ଷା,

ବଦଳିବାକୁ ମଣିଷର ଭାଗ୍ୟ
ଭୋକର ଚେହେରା
ଅନ୍ତସ୍ଥ ରକ୍ତରେ ଲେଖିବାକୁ
ଜ୍ୱାଳାର କବିତା ।

କବିତା କଣ
ରକ୍ତରେ ଧୋଇ



Digitized by PPRACHIN, SOA

ଯଂତ୍ରଣାରେ ଗାଧୋଇ
ସ୍ୱଚ୍ଛହୁଏ......(?)

ଭାଗ୍ୟ.......
ଗଛ ବନିବାର
ଥାଏ ।
କବି ମୁଣ୍ଡରେ
ବଜ୍ର ଲେଖାଥାଏ





Digitized by PPRACHIN, SOA

# ପ୍ରତ୍ନତତ୍ତ୍ୱ

ଦୋ' ଛକିରେ ଅଂଧାର
ପ୍ରଜ୍ଞା ଓ ପ୍ରତ୍ୟୟର ଖବର
ମିଳିନି ଏ ଯାଏଁ ।

ବାଘ ଘରେ ବାଘ
ବଗ୍ରି ଘରେ ବଗ୍ରି
ଖେଳୁଆଡ଼ ବ୍ୟସ୍ତ
ପ୍ରବାସୀକୁ ଚିହ୍ନଟ କରିବାରେ ।

କାହାଣ କାହାଣ ଗପକହି
ପାଣ୍ଡିତ୍ୟର ସନନ୍ଦ ପାଇଥିବା
ଜେଜେବାପା ଲେଖି ଯାଇଛନ୍ତି
ଐତିହାସିକ ବଂଶାବଳୀ
ଯାହାର ସତ୍ୟତା
ଖୋଜାସରିନି ଏ ଯାଏଁ ।

ମନ୍ଦିର ମନ୍ଦିର
ଶିଳାଲିପି ଶିଳାଲିପି
କେଉଁ ଅକ୍ଷର କେଉଁ କାଳର
ଅନ୍ୱେଷଣ ଜାରି ରଖିଛି
ଦାରୁଭୂତ ମୁରାରୀ ।

ପବନ ଖୋଲିଦିଏ ଗୁମର ।
ନିଦରେ
କେହି ଦେଖିପାରେନା ନିଜକୁ



Digitized by PPRACHIN, SOA

ସ୍ୱପ୍ନରେ ଅଣ୍ଡାଳିବା ଭିତରେ
ଠାବ କରିହୁଏ ନିଜର ଶୋ:ଧ
ନିଜର ପଶାକାଠି
ଧର ଧର ମାର ମାର'ର
କୁରୁକ୍ଷେତ୍ର ।

ଅନ୍ତତଃ ଥରୁଟିଏ କ୍ଷମା କରିଦିଅ
ନିଜକୁ
ପୂର୍ବ ପୁରୁଷର ନାଁ ଗାଁ ଠିକଣା
ପଢ଼ିବାର ଭୁଲ କରିଥିବାରୁ ।

ତା ପରେ
ଗୋଟିଏ ଇତିହାସ ବଦଳାଇ
ଆଉ ଏକ ନୂଆ ଇତିହାସ
ଲେଖାହେବ
ଲୁହରେ ।

ଶିଳାଲିପିର ପାଠୋଦ୍ଧାର
ସଂଭବ ନୁହେଁ
ସଂଭବ ନୁହେଁ ଚିହ୍ନିବା
ପୂର୍ବପୁରୁଷର ମୁହଁ
ଏ ଦୋ' ପଡ଼ିଆ ନୀତିର
ଦୁନିଆରେ ।





Digitized by PPRACHIN, SOA

# ପବନର ଖବର

ତୁ ଜାଣିଛୁ ମୋର ଦୁଃଖ
ଅନୁଭବିଛୁ ପତ୍ରେ ପତ୍ରେ ହାଡ଼େ ହାଡ଼େ
ଏଣୁ ତୋ ସାମ୍ନାରେ ବଖାଣୁଛି
ଏ ବକଟେ ସୁଖ ।

ସୁଖ ବୋଲି କଣ ?
ପାହାଡ଼ ସଂଧିର ଘର
ନିରୋଳା ମଣିଷପଣିଆ ପରି
ନିବିଡ଼ ନିଙ୍କର
ଅରଣ୍ୟ ମୟ ସଂସାର ।

ମଣିଷଠୁ ଦୂରେଇଲି
ପଡ଼ୋଶୀର ଈର୍ଷାର ସୀମାରେଖା
ଡ଼େଇଁ ଆସିଲି
ଅଥଚ ଏଠି ଟହ ଟହ ହସ
ଆଘାତର ଯଂତ୍ରଣାର
ଟଳି ପଡୁଛି ବତାସରେ ଘର ।

ସବୁ ଦୁଃଖ ବାଂଧି
ଗଛ ହେବା ସହଜ ନୁହେଁ
ଶିଳା ଲିପି ପ୍ରତ୍ନତତ୍ତ୍ୱ ଭିତରେ
ଭୂଖନନ ଦେଇ ଦୁଃଖର ଢ଼େର
ସମାହିତ
ଆସନ୍ତା କାଲିର ସମୟ ଦେଇ
ସବୁଜଛତ୍ର ପରିବ୍ୟାପ୍ତ ।



Digitized by PPRACHIN, SOA

ଅତୀତର ଆଖି
ବର୍ତ୍ତମାନର ନଈପରି ସଜଳ
ଗଛ ସଂଧିର ପକ୍ଷୀ
ଅଜଣା ସମୟର ଦିଗନ୍ତକୁ
ଉଡ଼ି ଯିବାକୁ ଉଦ୍ୟତ ।

ଆକାଶ କୁ ଚାହିଁ
କାହିଁକି ପଡ଼ି ରହିବ ପକ୍ଷୀ
ବସା ଭାଂଗି ଯାଇଛି ବାରଂବାର
ଏକାକୀ ନିଜ ପରରେ
ଥଣ୍ଟ ଘଷୁଛି
ଚୁଂଚୁ ମିଳାଇବା ପାଇଁ
ସାଥିଟିଏ ନାହିଁ

ଯାଉଛି ଗଛ ହେବି
ପବନର ଖବର ପଢ଼ି
ପକ୍ଷୀଟିକୁ ଉଡ଼ାଇ ଦେବି ।





Digitized by PPRACHIN, SOA

# ସମୁଦ୍ରକୁ ପିଠି

ସମୁଦ୍ରକୁ ପିଠିକରି
ଦୁଇଟି କିଶୋରୀ
ଜଣଙ୍କର ସୁରରେ ସମୁଦ୍ର
ଅନ୍ୟର ଲୁହରେ ଲହଡ଼ି
ବାରଂବାର ଗୋଟିଏ ଇ ଶବ୍ଦ
ଘୋଷୁଥାଏ
ସଞ୍ଜାନା........ସଞ୍ଜାନ.......
ହୋଇପାରେ ବ୍ୟକ୍ତିଟିର ନାମ
ପ୍ରେମିକର
ଆତ୍ମୀୟର
ପ୍ରତିଟି ଉଚ୍ଚାରଣରେ ସ୍ତବ୍ଧ ସମୁଦ୍ର
ଆସେ ଫେରେ
ବାରଘଣ୍ଟାର ତଫାତ୍‌ରେ
ଅଶ୍ରୁଳ ଚାନ୍ଦିପୁର ।

ଶବ୍ଦଟିର ଅର୍ଥ ଖୋଜିନି
କିଶୋରୀଟିର ମୁହଁ ଦେଖିନି
ମୁଁ ସମୁଦ୍ର ମୁହାଁ
ସେମାନେ ସମୁଦ୍ରକୁ ପିଠିକରି
ସଞ୍ଜାନା.......ସଞ୍ଜାନା
(ଶବ୍ଦ ଫିଙ୍ଗୁଥିଲେ, ଗଢୁଥିଲେ ଭାଙ୍ଗୁଥିଲେ । ବିଭୋର ....)

ହୋଇପାରେ ଗାଁର ନାମ ବା
ଅର୍ଥହୀନ ଏକ ସଂବୋଧନ
ବ୍ୟଥାର ଆବେଗର
ଅତି ଆପଣାର ।



Digitized by PPRACHIN, SOA

ଏମିତି ଗୋଟିଏ ପରିବେଶ
ଗଢ଼ିଦିଏ ଶବ୍ଦଟିଏ
ଛାଡ଼ିଦିଏ ଅନ୍ତରକୁ
ଫୋଡ଼ିବା ପାଇଁ
ଲହୁ ଲୁହାଣ କରିବା ପାଇଁ
ରକ୍ତ ଝରୁଥାଏ
ମିଠା ଲାଗୁଥାଏ
ସ୍ୱର ଶୁଭୁଥାଏ
ଅର୍ଥ ଜଣା ପଡ଼େନା ।

ଅପରିଚିତ ଅଥଚ
ଅତି ଆପଣାର
ମୁଁ ସମୁଦ୍ର ଦେଖୁ ଦେଖୁ
ହଜୁଥାଏ
ସମୁଦ୍ରକୁ ପିଠିକରି
ଦୁଇଟି କିଶୋରୀ
ଜଣେ ନିଶ୍ଚୁପ
ଜଣେ କାନ୍ଦୁଥାଏ ।





Digitized by PPRACHIN, SOA

# ଅନୁଭବର ଅଭିଷେକ

ପୁରୁଷ ପୁରୁଷର ପୁଞ୍ଜି
ସାଇତା ହୋଇଛି
ସ୍ୱପ୍ନ ଅଛି
ଅନେକ ମୂର୍ତ୍ତି ବି
ଅତୀତର ଭଙ୍ଗାଶିଳ୍ପ ଉପରେ ।

କୀର୍ତ୍ତି
ଜଣେ କିଏ ପରାଣ ହାରିଲା
ଦାନ୍ତୁରୀ ବୁଢ଼ୀ ସବୁଜାଣେ
ଭାରକୁ ଭାର ପଦ୍ମଫୁଲ
ନହଡ଼ି ପରେ ନହଡ଼ି
ସାନ୍ତରାଘର କାମକୁ
ନି-ପାରିଲା ମର୍ଦ୍ଦ ।

ଗର୍ଭଗୃହରେ
ତଥାପି ପ୍ରେମର ସନ୍ତକ
ଜଣେ କିଏ ଲେଖିଦବ
ରକ୍ତରେ ପ୍ରତ୍ୟୟ
ପୋଛିଦେବ
ନିବୀ ଖୋଲି ପଡିଥିବା ନର୍ତ୍ତକୀର
ଶ୍ରମ ଝାଳ ।

ଜଣେ କିଏତ
ପ୍ରଥମେ ଚଢ଼ିବ ଫାଶିଖୁଣ୍ଟ
ବା ଅଧା ଗଢ଼ା ସ୍ଥାପତ୍ୟରୁ
ଖୋଜିବ ମୁକ୍ତି ।



Digitized by PPRACHIN, SOA

ନିଦରେ କିଏ
ସର୍ବଦର୍ଶୀ ଦେବତା
ନା ପୂଜକ
ନିସ୍ପୃହ ପାର୍ଶ୍ୱ-ଦେବତା
କଳହରତ

ଜଣେ କିଏତ ଶୋଇନି
ସମୁଦ୍ର ବାଲିରେ
ମଣ୍ଡପରୁ ସାଉଁଟୁଛି
ଦୁଃଖ ଓ ବୈରାଗ୍ୟ ।

ଅଂଧାରର ଫୁଲିରେ
ରଖୁଛି ଘିଅ ଦୀପଟିଏ
ଦେଖିବ ବୋଲି ଅଂଧାରକୁ
ଅଲଗା କରି ଅଂଧାରରୁ

ତଥାପି ପ୍ରଜ୍ଞାରେ ଜଳୁଛି
ଅବଶେଷ
ଧ୍ୱଂସ ସ୍ତୁପ ଉପରେ
ଅନୁଭବର ଅଭିଷେକ ।

କିଏ ଜଣେ
ପ୍ରାର୍ଥନା କରୁଚି
ବାଞ୍ଛିତ ବୈରାଗ୍ୟ
ଶେଷ ତାରକାର ସ୍ୱପ୍ନରେ ।





Digitized by PPRACHIN, SOA

# ପୁରୀ

ଆସ
ଧଳା ଧଳା ମେଘ ଭିତରେ
ତମ ହାତ
ଧରିଛି ଈଶ୍ୱରଙ୍କୁ;

ତମେ
ବୋଇତ ବୋଲି ଭାବନା
ନୀଳ ଦରିଆ ବହୁତ
ଦୂର ।

ଦରିଆକୁ କିଏ କଳି ପାରିଛି
ନା ମୁଁ ପାରିବି ଆଜି

ତୁମେ ଆସିଲେ ବେଳାରେ
ଗୀତ ଗାଇବା
ଝାଉଁଗଛ ଗୁଡ଼ିକୁ ଛୁଇଁ ଛୁଇଁ
ପବନ ହେବା ।

ମୁଁ ନିଜ ଅଜ୍ଞାତରେ
ସମର୍ପି ଦେଇଛି ସ୍ୱପ୍ନ
ଧଳା ମେଘ ମାନଙ୍କୁ
ଚିଦ୍‌ଖୋର ପବନକୁ ଏବଂ
ଘାଉଲା ମନର ନିଦକୁ ।

ଝାଉଁଗଛ କଟିଗଲେ
ପରାଙ୍ଗ ପୁଷ୍ଟ ସଭ୍ୟତାର ମୀନାର
ହୁଏ



Digitized by PPRACHIN, SOA

କିଳିକିଳା ନାଦରେ
ସେମାନେ ଆତ୍ମହରା ହୁଅନ୍ତି
ଅରଣ୍ୟକୁ ଶୋଷି

ଆସ ଧଳା ଧଳା ମେଘ ଭିତରେ
ମୁଁ ତୁମର ଈଶ୍ୱରଙ୍କୁ
ସାଇତିଛି ।





Digitized by PPRACHIN, SOA

# ପୁଅ

ଗଛକୁ ମୁଁ ପୁଅ କରିଛି
ପୁଅ
ତା' ଭିତରେ ଦେଖିଛି
ଜଗତ ।

ତାର ଚଗଲାମିରେ ପୁରିଛି
ସଂସାର
ପୁଷ୍ଟ ହୋଇଛି ଆକାଶ ।

ସେ ସାରା ସଂସାରରେ
ଘର କରିଛି
ପ୍ରତି ଜୀବକୁ କରିଛି
ନିଜର

ସେ ଥିଲେ
ପଡୁଥାଏ ଉଠୁଥାଏ ଦାଣ୍ଡ
ନଗ୍ରସାରା
ଚହଲି ଯାଏ କୋଳାହଳ

ନାରୀଏ ଖୋଜୁଥାନ୍ତି ବସନ
ଅଂଧାରରେ
ସାଉଁଳି ଯାଆନ୍ତି ନିଜର
ଲବଣୀ ଦିହ ।

ସେ ଚାଲି ଗଲେ
ଝୁରୁ ଥାଏ ସାରା ମୁଲକ ।
❑



Digitized by PPRACHIN, SOA

# ଧର୍ମଯାଜକ

ସବୁଜ ରଂଗର
ବେହରଣ ପିଂଧି ଠିଆ
ଗଛ ମାନେ ହିଁ ଅମୃତର ସନ୍ତାନ ।

ସେମାନେ ମାଟି କାମୁଡ଼ି
ପଡିଥାନ୍ତି ।

ଅନନ୍ତ ଆକାଶର ପ୍ରେମରେ
ଆତ୍ମହରା ହୁଅନ୍ତି
ତ୍ୟାଗର ହାତ ପ୍ରସାରୀ
ସୃଷ୍ଟିକୁ ଜୀବନ୍ୟାସ ଦିଅନ୍ତି ।

ନିଜ ଆସନ୍ନ ମୃତ୍ୟୁରେ ବି
ହତ ଚକିତ ନୁହଁନ୍ତି ।

ନିଜକୁ ବାରଂବାର ଟେକି ଦିଅନ୍ତି
ସ୍ୱାର୍ଥୀ ସଂସାର ହାତରେ
ନିଜ ଅଜ୍ଞାତରେ

ଈଶ୍ୱରଙ୍କ ଅଜାଣତରେ
ପୁଷ୍ଟ କରନ୍ତି
ସ୍ୱାର୍ଥୀ କଳାହାତର
ଦେ' ଦେ' ଭାବକୁ
ବହୁ ମୂତ୍ର ରୋଗୀର
ପ୍ରଲମ୍ବମାନ ପେଟର
ସର୍ବଗ୍ରାସୀ ଭୋକକୁ ।

ସେମାନେ
ସବୁଜ ସବୁଜ ବେହରଣ ତଳେ
ଈଶ୍ୱର ପରି ଦିଶନ୍ତି ।
କଳା ସମୟ ଭିତରେ
ଧଳା ପୋଷାକର ଧର୍ମ ଯାଜକ ଯେମିତି ।




Digitized by PPRACHIN, SOA



## ଫଣୀଂଦ୍ର ଭୂଷଣ ନଂଦ

ଜନ୍ମ ୧୯୫୯, ଅଧୁନା ରେଂଗାଲି ଡ୍ୟାମ୍‌ରେ ଜଳମଗ୍ନ ରେଂଗ୍‌ତା ଗ୍ରାମରେ ।

ଛାତ୍ର ଜୀବନରୁ କବିତା, ପ୍ରବଂଧ ଓ ନାଟକ ରଚନାରେ ମନୋନିବେଶ । କ୍ରମଶଃ ଗବେଷଣା ପର୍ଯ୍ୟାୟକୁ ଉତ୍ତୀର୍ଣ୍ଣ ଓ ବାମଂଡ଼ା ଅଂଚଳର ଅନାଲୋଚିତ ସାରସ୍ୱତ ପ୍ରତିଭାଙ୍କ ଉପରେ ଧାରାବାହିକ ଆଲୋକପାତ । ଦେବଗଡ଼ ବାସୁଦେବ ସାହିତ୍ୟ ସଂସଦର ପ୍ରତିଷ୍ଠାତା ସଂପାଦକ । ସଂଭ୍ରାଂତ ସାହିତ୍ୟ ପତ୍ର 'ପାଖୁଡ଼ା'ର ମୁଖ୍ୟ ସଂପାଦକ ।

**ସୃଷ୍ଟି ସଂଭାର :**

ନିଶବ୍ଦ ଆକାଶର ଡ଼ାକ (କବିତା - ୧୯୯୩)

Digitized by PPRACHIN, SOA